# PRESERVER.

*Translated from the Bengali work*

OF

HARISH CHANDRA SARMA.

—o—

# ଜୀବନରକ୍ଷକ ।

୨ୟ ସଂସ୍କରଣ ।

CUTTACK.

Printed by the Cuttack Printing Company.

1891.

ମୂଲ୍ୟ ହେ ୦ /୨

# ଜୀବନରକ୍ଷକ ।

କାମେନ୍ଦ୍ରିୟର ଅପରିମିତ ପରିଚାଳନ ଓ ଅନୈସର୍ଗିକ ଉପାୟରେ ରେତଃ ପାତନ (ହସ୍ତମୈଥୁନ ) ହେତୁରୁ ଯେଉଁ ଧାତୁଦୌର୍ବଲ୍ୟ ( Sexual debelity ) ଘଟେ, ୟରେ ଆଜପର୍ଯ୍ୟନ୍ତ ଦେଶୀୟଭାଷାରେ କେହି କିଛି ଲେଖି ନାହାନ୍ତି ।

ଚିକିତ୍ସକମାନଙ୍କ ମଧ୍ୟରେ ଅନେକ ସୁପଣ୍ଡିତ ଓ ପାରଦର୍ଶୀ ଲୋକ ଅଛନ୍ତି କିନ୍ତୁ ସେମାନଙ୍କ ମଧ୍ୟରେ ଅନେକେ ମନରେ ବିଚାର କରନ୍ତି ଯେ ଅନୈସର୍ଗିକ ରେ ରେତଃପାତନ (ହସ୍ତମୈଥୁନ) ଓ ଅପରିମିତ ସ୍ତ୍ରୀସଂସର୍ଗ, ଏଗୁଡ଼ିକ କୁତ୍ସିତ ଏ ସବୁ ଶବ୍ଦ ଅତି ଅଶ୍ଳୀଳ ଓ ଅଶ୍ରାବ୍ୟ, ଏ ସମସ୍ତ କାର୍ଯ୍ୟ ଘୃଣାକର, ଏ ସମସ୍ତ ଧ ଲଜ୍ଜାକର; ସୁତରାଂ ଏତତ୍ସମ୍ବନ୍ଧୀୟ ଦୁର୍ଘଟନାର ବିଷୟ ଲେଖି ପୁସ୍ତକାକାରରେ ଶ କରିବାର କୌଣସିମତେ ବିବେଚନାସିଦ୍ଧ ନୁହେ ।

ଯେଉଁ କାର୍ଯ୍ୟ ସବୁପ୍ରକାରରେ କୁତ୍ସିତ ତାହାର ଆଲୋଚନା କରିବା ମଧ୍ୟ ଅବୈଧ । ଯାନେ ଏ ବିଷୟର ଆଲୋଚନାକୁ ଉଚିତ ବୋଧ କରନ୍ତି, ସେମାନଙ୍କ ମଧ୍ୟରୁ କ ମନେ କରନ୍ତି ଯେ ଏ ବିଷୟରେ ପୁସ୍ତକ ପ୍ରକାଶ କଲେ ଲୋକେ ତାହା ବେ ସେ ପୁସ୍ତକ ଭଦ୍ରଲୋକର ଅପାଠ୍ୟ ହେବ । ବାସ୍ତବିକ ଏପ୍ରକାର ବିଷୟ ପୁସ୍ତକରେ ଯେପ୍ରକାର କେତେଗୁଡ଼ିଏ ଶବ୍ଦ ପ୍ରୟୋଗ ଅନିବାର୍ଯ୍ୟ ତହିଁରେ ନ ସଭ୍ୟତା ଓ ଲଜ୍ଜାଶୀଳତାର ବଶବର୍ତ୍ତୀ ପିତା ପୁତ୍ରକୁ, ବା ଶିକ୍ଷକ ଛାତ୍ରର ର ପାଠ କରିବାକୁ ଦୁରୂହ । କିନ୍ତୁ ପ୍ରୟୋଜନ ବୁଝି କାର୍ଯ୍ୟର କର୍ତ୍ତବ୍ୟାକର୍ତ୍ତବ୍ୟ ହିବାର ଉଚିତ । ଯେଉଁ ଜ୍ଞାନଲାଭଦ୍ୱାରା ଭାବୀ ମହାବିପଦରୁ ଉତ୍ତୀର୍ଣ୍ଣ ହେବାକୁ ବ ଯାହାର ଉପଦେଶଦ୍ୱାରା ବାଳକ ଓ ଯୁବକମାନଙ୍କର ମହୋପକାର ସମ୍ଭା- ବ, ଦୁଇଗୋଟି ଅଶ୍ଳୀଳ ଶବ୍ଦ ଅଛି ବୋଲି, ତଦ୍ବିଷୟକ ପୁସ୍ତକ ପ୍ରଣୟନ ମନେ କରିବାର ବା ସେହି ବିଷୟସଂକ୍ରାନ୍ତ ପୁସ୍ତକାଦି ପାଠରେ ବିରତ ଅଧୀନସ୍ଥ ବାଳକ ଓ ଯୁବକମାନଙ୍କ ହିତାର୍ଥ ସେମାନଙ୍କୁ ତଦ୍ବିଷୟରେ ା ନ ଦେବାର ଯେ କେତେ ବଡ଼ ଅବିବେଚକତା ଓ ନିଷ୍ଠୁରତାର କାର୍ଯ୍ୟ କହିବା ବାହୁଲ୍ୟ ।

ଯେମାନେ ଅମ୍ଭର ଏହି ହିତକର କ୍ଷୁଦ୍ରଗ୍ରନ୍ଥକୁ ଅଶ୍ଳୀଳ ମନେ କରିବେ, ସେମାନଙ୍କ ର ଏହି ଜିଜ୍ଞାସ୍ୟ, ଯେ ସେମାନେ କେବେ ହସ୍ତମୈଥୁନ କରିଅଛନ୍ତି କି ନା, କରିଥିଲେ ସେମାନଙ୍କର ଶାରୀରିକ ଓ ମାନସିକ ଅପକାର ହୋଇଅଛି କି ନା ?

ଯଦି ସେମାନେ ପ୍ରଥମାବସ୍ଥାରେ ହସ୍ତମୈଥୁନର ଅତୀବ ଭୟାନକ ଫଳ ଅବଗତ ହୋଇ ଥାନ୍ତେ, ତାହାହେଲେ କି ଆତ୍ମରକ୍ଷା କରି ନ ଥାନ୍ତେ?

କାମେନ୍ଦ୍ରିୟର ଅପରିମିତ ପରିଚାଳନ ଓ ତନ୍ନିବନ୍ଧନ ଅଧିକତର ଶୁକ୍ରକ୍ଷୟ ହେଲେ ସ୍ୱାସ୍ଥ୍ୟ ଏକବାରେ ନଷ୍ଟ ହୁଏ, ଏବଂ ନାନାପ୍ରକାର ଉତ୍କଟ ରୋଗର ଉତ୍ପତ୍ତି ହୁଏ । ଏବଂ କ୍ରମେ ୨ ମନୁଷ୍ୟକୁ ମନୁଷ୍ୟତ୍ୱବର୍ଜିତ କରେ ।

ଅପରିମିତ ସ୍ତ୍ରୀସଂସର୍ଗ, ଅନୈସର୍ଗିକ ଉପାୟରେ ରେତଃ ପାତନ ( ହସ୍ତମୈଥୁନ, ପୁଂମୈଥୁନ, ଓ ପଶୁମୈଥୁନ ପ୍ରଭୃତି ) ଏବଂ ସ୍ୱପ୍ନଦୋଷ ଅର୍ଥାତ୍ ନିଦ୍ରାବସ୍ଥାରେ ମନର ଚାଞ୍ଚଲ୍ୟ ହେତୁ ଶୁକ୍ର ନିଃସରଣ, ଏହି ତିନି ପ୍ରକାରରେ କାମେନ୍ଦ୍ରିୟର ଅପରିମିତ ପରିଚାଳନ ହୁଏ ।

ଯେପର୍ଯ୍ୟନ୍ତ ମନୁଷ୍ୟର କଙ୍କାଳ ପରିପକ୍ୱ ହୋଇ ନ ଥାଏ ସେ ପର୍ଯ୍ୟନ୍ତ ସ୍ତ୍ରୀସଂସର୍ଗ ନ କଲେ ଅତି ଉତ୍ତମ । ନ୍ୟୂନାଧିକ ୨୮ ବର୍ଷ ବୟଃକ୍ରମରେ କଙ୍କାଳର ସମସ୍ତ ଅସ୍ଥି ପରିପକ୍ୱ ହୁଏ । ହିମପ୍ରଧାନ ଦେଶର ପୁରୁଷମାନେ ପ୍ରାୟ ୨୮ ବର୍ଷ ବୟଃକ୍ରମର ପୂର୍ବରେ ବିବାହ କରନ୍ତି ନାହିଁ । ଭାରତବର୍ଷୀୟ ପ୍ରାଚୀନ ପ୍ରଧାନତମ ଧର୍ମଶାସ୍ତ୍ର-ପ୍ରବର୍ତ୍ତକ ଭଗବାନ ମନୁ କହିଅଛନ୍ତି ।

ତ୍ରିଂଶଦ୍ବର୍ଷୋ ବହେତ୍ କନ୍ୟାଂ ହୃଦ୍ୟାଂ ଦ୍ୱାଦଶବାର୍ଷିକୀଂ ।
ତ୍ର୍ୟଷ୍ଟବର୍ଷୋଽଷ୍ଟବର୍ଷାମ୍ବା ଧର୍ମେ ସୀଦତି ସତ୍ୱରଃ ।

ଅର୍ଥାତ୍ ଦ୍ୱାଦଶବର୍ଷୀୟା କନ୍ୟାର ସହିତ ୩୦ ବତ୍ସରବୟସ୍କ ପୁରୁଷର ଏବଂ ଅଷ୍ଟମବର୍ଷୀୟା କନ୍ୟାର ସହିତ ୨୪ ବର୍ଷବୟସ୍କ ପୁରୁଷର ବିବାହ ହେବାର ଉଚିତ । ଅନ୍ୟଥା ଧର୍ମହାନିର ସମ୍ଭାବନା । ବୋଧ ହୁଏ ହିନ୍ଦୁଜାତି କ୍ରମେ କ୍ରମେ ଏହି ନିୟମର ପରିବର୍ତ୍ତନ କରିବାରୁ ଏତେଦୂର ହୀନ-ବୀର୍ଯ୍ୟ ଓ ନିସ୍ତେଜ ହୋଇଅଛନ୍ତି ।

ଏଦେଶ କ୍ରମେ ୨ ପୂର୍ବାପେକ୍ଷା ଅଧିକତର ଉଷ୍ଣପ୍ରଧାନ ହୋଇ ଉଠିଅଛି । ଉଷ୍ଣପ୍ରଧାନ ଦେଶରେ ଅଳ୍ପବୟଃକ୍ରମରେ ମନୁଷ୍ୟର ଇନ୍ଦ୍ରିୟାଦିର ଚାଞ୍ଚଲ୍ୟ ଉପସ୍ଥିତ ହୁଏ ।

ଏହି ନିମିତ୍ତ ବୋଧ ହୁଏ, ଅଳ୍ପ ବୟସରେ ବିବାହର ପ୍ରଥା ଏ ଦେଶରେ କ୍ରମେ ପ୍ରଚଳିତ ହୋଇଅଛି । ଯାହା ହେଉ ଏ ଦେଶର ବର୍ତ୍ତମାନ ଅବସ୍ଥାରେ ମଧ୍ୟ ଊନବିଂଶତି ବତ୍ସର ବୟଃକ୍ରମର ପୂର୍ବରେ ସାଧାରଣତଃ ପୁରୁଷର ସ୍ତ୍ରୀ ସଂସର୍ଗ କରିବାର କୌଣସିକ୍ରମେ ଉଚିତ ନୁହେ ।

ଦୁର୍ଭାଗ୍ୟବଶତଃ ଅଳ୍ପ ବୟଃକ୍ରମରେ ଯେଉଁମାନଙ୍କର ବିବାହ ହୋଇଅଛି, ସେମାନଙ୍କର ପିତା ମାତା ବା ଅଭିଭାବକମାନଙ୍କର କର୍ତ୍ତବ୍ୟ ଯେ, ସ୍ତ୍ରୀ, ପୁରୁଷଙ୍କର ଉପଯୁକ୍ତ ବୟଃକ୍ରମ ନ ହେବା ପର୍ଯ୍ୟନ୍ତ ତାଙ୍କୁ ପରସ୍ପରଠାରେ ବିଚ୍ଛିନ୍ନ ରଖିବେ ।

କୌଣସି ଗୋଟିଏ ପଶ୍ଚିମଦେଶୀୟ ବୀରପୁରୁଷ ଆପଣା ପୁତ୍ର ରଘୁନାଥକୁ ପଞ୍ଚବିଂଶତି ବର୍ଷର ବୟଃକ୍ରମ ପର୍ଯ୍ୟନ୍ତ ସ୍ତ୍ରୀସଂସର୍ଗ କରିବାକୁ ଦେବାର ଅହିତକର ମନେ କରି ତାହାକୁ ଓ ପୁତ୍ରବଧୂ ଜାନକୀକୁ ପରସ୍ପରଠାରୁ ଅତି ସାବଧାନରେ ପୃଥକ୍ ରଖିଥାନ୍ତି । ଏହି ସମୟରେ ରଘୁନାଥର ବୟଃକ୍ରମ ୨୪ ବର୍ଷ ଓ ଜାନକୀର ବୟଃକ୍ରମ ୧୭ ବର୍ଷ ହୋଇଥିଲା । ରଘୁନାଥ ଅତି ବଳବାନ୍, ସୁଦୀର୍ଘକାୟ ଓ ହୃଷ୍ଟ ପୁଷ୍ଟ ଏବଂ ନାନା ପ୍ରକାର ଅସ୍ତ୍ରବିଦ୍ୟାରେ ସୁପଟୁ ଥିଲା । ଜାନକୀ ମଧ୍ୟ ସୁଶ୍ରୀ ବଳିଷ୍ଠା ଓ ପୂର୍ଣ୍ଣଯୌବନା । ରଘୁନାଥ ଓ ଜାନକୀର କୌଣସି ପ୍ରକାରେ ମିଳନ ହୋଇ ପାରେ; ଏହି ଆଶଙ୍କାରେ ବୀରପୁରୁଷ ପ୍ରତିଦିବସ ରଜନୀରେ ଏକ ପ୍ରଶସ୍ତ ଶଯ୍ୟାରେ ଆପେ ଶୟନ କରି ଆପଣାର ବାମପାର୍ଶ୍ୱରେ ଆପଣା ସ୍ତ୍ରୀ ଓ ତାହାର ବାମପାର୍ଶ୍ୱରେ ପୁତ୍ରବଧୂ ଜାନକୀକୁ ଏବଂ ଆପଣାର ଦକ୍ଷିଣପାର୍ଶ୍ୱରେ ପୁତ୍ର ରଘୁନାଥକୁ ଶୟାଇ ରଖନ୍ତି । ସମସ୍ତ ରଜନୀ ଗୃହରେ ପ୍ରଦୀପ ଜଳୁଥାଏ ଏକଦା ହଠାତ୍ ପ୍ରଦୀପ ନିର୍ବାଣ ହେବାରୁ ରଘୁନାଥ ପିତା ମାତାଙ୍କୁ ନିଦ୍ରିତ ଦେଖି ଆପଣାର ଦକ୍ଷିଣପାର୍ଶ୍ୱସ୍ଥ ଧନୁକର ଏକହାତ ଜାନକୀ ନିକଟକୁ ଅର୍ପଣ କଲା । ଜାନକୀ ଆପଣା ସ୍ୱାମୀର ଅଭିପ୍ରାୟ ବୁଝି ଧନୁକ ଉପରେ ଆରୋହଣ କଲା । ରଘୁନାଥ ଧନୁକାରୂଢ଼ା ଜାନକୀକୁ ଅନାୟାସରେ ଆପଣା ନିକଟକୁ ଆଣି ମନୋରଥ ପୂର୍ଣ୍ଣ କଲା । ଜାନକୀ ପୁନର୍ବାର ଧନୁକ ଆରୋହଣ କଲା । ରଘୁନାଥ ଧନୁକାରୂଢ଼ା ଜାନକୀକୁ ପୂର୍ବ ପ୍ରଣାଳୀରେ ନିଦ୍ରିତ ପିତା ମାତାଙ୍କୁ ଲଙ୍ଘନ କରି ସ୍ୱସ୍ଥାନରେ ସଂସ୍ଥାପନ କରିବାର ଚେଷ୍ଟା କଲା । କିନ୍ତୁ ଜାନକୀ ସ୍ୱସ୍ଥାନରେ ଉପସ୍ଥିତ ହେବା ପୂର୍ବରୁ ଦୈବାତ୍ ଧନୁକ ରଘୁନାଥର ନିଦ୍ରିତ ପିତା ମାତାଙ୍କ ଗାତ୍ରୋପରେ ପତିତ ହେଲା । ବୀରପୁରୁଷ ଓ ତାହାର ପତ୍ନୀ ମଧ୍ୟ ଜାଗ୍ରତ ହେଲେ । ବୀରପୁରୁଷ ସମସ୍ତ ବ୍ୟାପାର ବୁଝି ପାରି ବିଶେଷ ଆକ୍ଷେପ କରି ରଘୁନାଥକୁ କହିଲେ "ରେ ବାଚ୍ଛା ! ଅଉର ବରଷ ରୋଜ ସବୁର କରତେ, ତବ୍ ଧନୁକ ତର୍ ଲେଜେବ ଶକ୍ତେ ଓ ଦେନେବ ଶକ୍ତେ, ଥୋଡ଼ା ରୋଜ୍‌କେ ଓ୍ୱାସ୍ତେ ସବ୍ ବରବାଦ୍ କିୟା ।"

ଉପଯୁକ୍ତ ବୟଃକ୍ରମରେ ବିବାହ ଏବଂ ସ୍ତ୍ରୀସଂସର୍ଗ କରିବାର ପ୍ରଥା ଅଦ୍ୟାପି ମଧ୍ୟ ଉତ୍ତର ପଶ୍ଚିମ ଦେଶର ସ୍ଥାନେ୨ ପ୍ରଚଳିତ ଅଛି ।

ଅତ୍ୟଳ୍ପ ବୟସ୍ସ ବିବାହରେ ଏବଂ ଅପରିମିତ ସ୍ତ୍ରୀସଂସର୍ଗରେ ଏ ଦେଶ ଯେପ୍ରକାର କଳଙ୍କିତ, ବୋଧ ହୁଏ ଜଗତରେ ଅଧୁନାତନ ଆଉ କୌଣସି ଦେଶ ଏପ୍ରକାର କଳଙ୍କିତ ନୁହେ ।

ଅଳ୍ପ ବୟଃକ୍ରମରେ ଓ ଅପରିମିତ ରୂପେ ସ୍ତ୍ରୀସଂସର୍ଗ ଅପେକ୍ଷା ଶତସହସ୍ରଗୁଣେ ଭୟାନକ ମହାପାପ ହସ୍ତମୈଥୁନ—ପୃଥିବୀକୁ ଅଧିକ କଳଙ୍କିତ କରୁଅଛି । କେହିଁ ସମ

ସୁତରାଂ ଯେ ଏ ମହାପାପ-ରୂପ କାଳସର୍ପ ମନୁଷ୍ୟଜାତିକୁ ଦଂଶନ କରିଅଛି ତାହା ନଷ୍ଟ କରିବାର କଠିନ । ଏ ଦେଶରେ ପ୍ରବାଦ ଅଛି ଯେ ଭଗବାନ୍ ବିଶ୍ୱାମିତ୍ର ଋଷି ହସ୍ତମୈଥୁନ ପ୍ରଭୃତି ଅସ୍ୱାଭାବିକ କ୍ରିୟାପଥର ସୃଷ୍ଟି କରିଅଛନ୍ତି । କିନ୍ତୁ ପ୍ରାଚୀନ ଶାସ୍ତ୍ର-ଗ୍ରନ୍ଥରେ ତାହାର କୌଣସି ନିଦର୍ଶନ ମିଳଇ ନାହିଁ । ସ୍ମୃତି ଶାସ୍ତ୍ରରେ ଏହାର ପ୍ରାୟ-ଶ୍ଚିତ୍ତର ବିଧାନ ଅଛି । ଏଥିରୁ ବୋଧ ହୁଏ ଯେ ପୂର୍ବକାଳରୁ ଏହା ପ୍ରଚଳିତ ଅଛି । ମିଷ୍ଟ ଅମ୍ରର ଅଭ୍ୟନ୍ତରରେ କୀଟ ଜନ୍ମି ଯେପ୍ରକାର ତାହାର ମଧ୍ୟଦେଶକୁ ସାର-ବିହୀନ କରେ ସେହି ପ୍ରକାର ଏହି କୁତ୍ସିତ ଅଭ୍ୟାସ ମନୁଷ୍ୟଙ୍କୁ ଅନ୍ତଃସାରବିହୀନ କରେ ।

ବାଳକମାନେ ସାଧାରଣତଃ ୧୨।୧୪ ବର୍ଷ ବୟଃକ୍ରମରେ ହସ୍ତମୈଥୁନ କରିବାର ଆରମ୍ଭ କରନ୍ତି କେହି କେହି ୮।୯ ବର୍ଷ ବୟସରେ ମଧ୍ୟ କୁସଂସର୍ଗ ହେତୁ ଏଥିର ଶିକ୍ଷା ପାନ୍ତି । ପ୍ରଥମରେ କି ହେତୁରେ ମନୁଷ୍ୟଜାତିର ହସ୍ତମୈଥୁନରେ ପ୍ରବୃତ୍ତି ହେଲା ତାହା ନିର୍ଣ୍ଣୟ କରିବାର କଠିନ ।

ବୋଧହୁଏ କୌଣସି ବୟଃପ୍ରାପ୍ତ ବ୍ୟକ୍ତିର * * ହଠାତ୍ କୌଣସି ପଦାର୍ଥର ଘର୍ଷଣରେ କିଛି ସୁଖ ବୋଧ ହେବାରୁ, ତାହା ହସ୍ତଦ୍ୱାରା ସଂଚାଳନ କରିବାରେ ସେ ଗରମ ଓ କାମାଶକ୍ତ ହେଲା । ତହୁଁ ହସ୍ତଦ୍ୱାରା ଶିଶ୍ନର ଅଗ୍ରଭାଗ ଖୋଲି-ବାକୁ ଓ ବନ୍ଦ କରିବାକୁ ତାହାର ଇଚ୍ଛା ହେଲା । କିଛି କାଳ ଏହି ପ୍ରକାର କରିବାରୁ ଶୁକ୍ର ନିର୍ଗତ ହେଲା । ନିର୍ଗତ ହେବାର ଅବ୍ୟବହିତ ପୂର୍ବେ ସୁଖାନୁଭବ ହୋଇ ସମୁଦାୟ ଚଞ୍ଚଳତା ନିବୃତ୍ତି ହେଲା । ଏ କାର୍ଯ୍ୟରେ ଅଶ୍ରମ ବୋଧହୁଏ, ଏବଂ ଇଚ୍ଛାନୁ-ରୂପ ସୁଖ ଲାଭ ଅନାୟାସରେ ହୁଏ ବୋଲି ସେ ପୁନରପି ହସ୍ତମୈଥୁନରେ ପ୍ରବୃତ୍ତ ହୋଇ କାମରିପୁର ଶୃଙ୍ଖଳ୍ୟ ନିବାରଣ କଲା । ତହୁଁ ସେ ଏଥିରେ ବଡ଼ ଆରାମ ମନେ କରି କ୍ରମେ ଏହା ଅଭ୍ୟାସ କଲା । ଏ ସୁଖର କାର୍ଯ୍ୟ ଯେ ତାହାର କିପରି ସର୍ବନାଶର ମୂଳ ହେବ ତାହା ସେ ଜାଣି ପାରିଲା ନାହିଁ । ତାହାର ଶରୀର କ୍ରମେ କ୍ଷୀଣ ଓ ବଳବୀର୍ଯ୍ୟବିହୀନ ହେବ, ତାହାର ଭ୍ରମଣଶକ୍ତିର ହ୍ରାସତା ହେବ, ମନ ଉଦ୍ୟମ-ବିହୀନ ଓ ନିସ୍ତେଜ ହେବ, ସେ ମନୁଷ୍ୟତ୍ୱବିହୀନ ହେବ, ତାହାର ସନ୍ତାନୋତ୍ପାଦିକା ଶକ୍ତି ବିନଷ୍ଟ ହେବ, ବୁଦ୍ଧି ହ୍ରାସ ହେବ, ଶାରୀରିକ ଓ ମାନସିକ ସ୍ଫୂର୍ତ୍ତି ନଷ୍ଟ ହେବ, ଏବଂ ତାହାକୁ ପୃଥିବୀରେ ଜଡ଼ପଦାର୍ଥ ତୁଲ୍ୟ ହୋଇ ଜୀବନର ଭାର ବହନ କରିବାକୁ ହେବ ଏ ସମୁଦାୟ ସେ କିଛି ଜାଣି ପାରିଲା ନାହିଁ । ଜାଣି ପାରିଥିଲେ ବୋଧ ହୁଏ ଏ ଅପ-କାରୀ ବୃଥା ସୁଖାସ୍ୱାଦନରେ କଦାପି ପ୍ରବୃତ୍ତ ହୋଇ ନ ଥାନ୍ତା । ଏହି ଅନାୟାସଲବ୍ଧ ସୁଖର ବିଷୟ ହୁଏ ତ ସେ ଅନ୍ୟବ୍ୟକ୍ତି ନିକଟରେ ପ୍ରକାଶ କଲା । ଶ୍ରୋତା ମଧ୍ୟ ନିଜେ ପରୀକ୍ଷା କରତଃ ସୁଖାନୁଭବ କରି କ୍ରମେ ଅଭ୍ୟାସ କଲା । ପ୍ରଥମରେ ସୁଖାନୁଭବ ହୁଏ

ଏବଂ ଘୃଣା ବିଷମୟ ଫଳ ପ୍ରଥମରେ ଅନୁଭବ ହୁଏ ନାହିଁ ବୋଲି କ୍ରମେ ଏହି ମହା-ପାପ ଜନସମାଜରେ ବିସ୍ତାରିତ ହେଲା ।

ବର୍ତ୍ତମାନ ସଂସର୍ଗଦୋଷରେ ଏହାର ବିସ୍ତାର ହେଉଅଛି । ଶିଶୁକାଳରୁ ଶିଶୁମାନଙ୍କ ଦୁଃସଂସର୍ଗରୁ ରକ୍ଷା କଲେ ହୁଏତ ସେମାନଙ୍କର ଏକକାଳେ ଏହା ଶିକ୍ଷା ହେବ ନାହିଁ । ଯଦି କେହି ଏହା କୌଣସି ପ୍ରକାରରେ ଶିକ୍ଷା କରେ ତେବେ ତାହାକୁ ଏହାର ଘୃଣା ବିଷମୟ ଫଳ ବିସ୍ତାରିତରୂପେ ବୁଝାଇ ଦେଲେ ସେ କ୍ଷାନ୍ତ ହେବ । ଯେଉଁମାନଙ୍କର ଏହା ବିଶେଷ ଅଭ୍ୟାସ ହୋଇଅଛି ସେମାନଙ୍କ ପକ୍ଷରେ ବିବାହ କରିବାର ଏକପ୍ରକାର ସଦୁପାୟ । ବାଳକ, ଯୁବା ଓ ପ୍ରୌଢ଼ ବ୍ୟକ୍ତି ସମସ୍ତେ ହସ୍ତମୈଥୁନରେ ଆସକ୍ତ ହୁଅନ୍ତି କିନ୍ତୁ ବାଳକ ଓ ଯୁବକମାନେ ଏଥିରେ ଅତିଶୟ ଆସକ୍ତ । ଏଦେଶରେ ୧୪।୧୫ ବର୍ଷ ବୟଃକ୍ରମ ପର୍ଯ୍ୟନ୍ତ ବାଳକାବସ୍ଥା । ୨୮ ବର୍ଷ ପର୍ଯ୍ୟନ୍ତ ଯୁବାବସ୍ଥା ଏବଂ ୪୯ ବର୍ଷପର୍ଯ୍ୟନ୍ତ ପ୍ରୌଢ଼ାବସ୍ଥା । ତଦୂର୍ଦ୍ଧରେ ବୃଦ୍ଧାବସ୍ଥା ।

ବାଳକମାନେ ପ୍ରାୟ ଅସ୍ୱାଭାବିକ କାର୍ଯ୍ୟରେ ରତ । ସଂସର୍ଗଦୋଷରେ ବାଳକ-ମାନଙ୍କର ହସ୍ତମୈଥୁନ ଆଦି କୁତ୍ସିତ କାର୍ଯ୍ୟ ଶିକ୍ଷା ହୁଏ ।

ତେତେବେଳେ ସେମାନଙ୍କର ନିର୍ଦ୍ଦୋଷ ଅବସ୍ଥାରୁ ଅଧଃପତନ ହୁଏ । ପିତା ମାତା ଅଭିଭାବକ ଗୁରୁଜନ ଓ ଶିକ୍ଷକଙ୍କ ନିକଟରେ ସେମାନେ ସଲଜ୍ଜ ହୁଅନ୍ତି ତାହାଙ୍କ ମୁଖ-ଆଡ଼କୁ ଚାହିଁ ଆଳାପ କରିପାରନ୍ତି ନାହିଁ । ଏହି ପାପ ସ୍ପର୍ଶର ପ୍ରଥମ ଲକ୍ଷଣ । ପିତା ମାତା ଶିକ୍ଷକ ଓ ଅଭିଭାବକଗଣ ଯେମନ୍ତ ଏ ବିଷୟରେ ସର୍ବଦା ସଚେତନ ଥିବେ । ସର୍ବଦା ଏହି ଲକ୍ଷଣଟି ଅବଲୋକନ କରିବାକୁ ଚେଷ୍ଟା କରିବେ । ଯେତେ-ବେଳେ ଏହି ଲକ୍ଷଣ ପ୍ରଥମ ଦୃଷ୍ଟି କରିବେ ତେତେବେଳେ ତାହାର ପ୍ରତିବିଧାନ କରିବାକୁ ଚେଷ୍ଟା କରିବେ ।

ହସ୍ତମୈଥୁନ ଉକ୍ତ ବିଷୟ ଅଭ୍ୟାସ କଲେ ଶୁକ୍ରମେହ ( ସ୍ପର୍ମାଟୋରିୟା ) ରୋଗର ଉତ୍ପତ୍ତି ହୁଏ । ପ୍ରସ୍ରାବର ସହିତ ଓ ଶୌଚରେ ଟିକି କୁନ୍ଥାଣ ଦେଲେ ଶୁକ୍ର ନିଃସୃତ ହୁଏ । ନିଦ୍ରାବସ୍ଥାରେ ସ୍ୱପ୍ନଦୋଷ ହୁଏ । ଏବଂ ମାନସିକ ଚାଞ୍ଚଲ୍ୟହେତୁ କେବେ କେବେ ଜାଗ୍ରତାବସ୍ଥାରେ ମଧ୍ୟ ଶୁକ୍ର ସ୍ଖଳିତ ହୁଏ । ଏ ଅବସ୍ଥା ଘଟିଲେ ମନର ଭାବର ଅନେକ ପରିବର୍ତ୍ତନ ହୁଏ । ସ୍ୱଭାବ ଚିଡ଼ ଚିଡ଼ିଆ ହୁଏ । ଅଳ୍ପ କାରଣରେ ଅସନ୍ତୋଷ ଉପସ୍ଥିତ ହୁଏ ଏବଂ ଶ୍ରୀ ଅସନ୍ତୋଷ ବ୍ୟଞ୍ଜକ ହୁଏ । ସାହସ କମ ହୋଇ ଯାଏ । ବିଶେଷ ଭାବର ଉଦ୍ରେକ ବ୍ୟତୀତ ସେମାନେ ଭୀରୁ ଏବଂ ଚିନ୍ତାଯୁକ୍ତ ହୁଅନ୍ତି । ଏବଂ ଅନ୍ୟର ଅତ୍ୟାଚାରରେ କ୍ରୋଧାନ୍ୱିତ ହେବାକୁ ସାହସୀ ନ ହୋଇ କ୍ଷମାଶୀଳ ହୁଅନ୍ତି । ଏହି ସକଳ ରୋଗୀ ଗୁରୁତର କାର୍ଯ୍ୟଭାର ଗ୍ରହଣରେ ସମ୍ପୂର୍ଣ୍ଣ ଅନୁପଯୁକ୍ତ ହୁଅନ୍ତି ।

*

ଶାନ୍ତରୂପେ କୌଣସି ବିଷୟ ଚିନ୍ତା କରିବାକୁ ଅକ୍ଷମ ହୁଅନ୍ତି । ଏବଂ ଆପଣାର ଓ ଅନ୍ୟର ପ୍ରତି ସର୍ବଦା ବିରକ୍ତି ପ୍ରକାଶ କରେ ଓ ଆପଣାର ଦୁରବସ୍ଥା ଓ ପୀଡ଼ାର ବିଷୟ ସର୍ବଦା ଚିନ୍ତା କରି ସ୍ଫୂର୍ତ୍ତି ବିହୀନ ହୋଇ କାଳଯାପନ କରନ୍ତି । ପ୍ରଥମତଃ ଅଧିକ ଶୁକ୍ର କ୍ଷୟ ହେତୁ କ୍ଷୁଧାର ଆତିଶଯ୍ୟ ହୁଏ, ସୁତରାଂ ସେମାନଙ୍କର ଅତି ଭୋଜନରେ ଇଚ୍ଛା ହୁଏ । ପୁଣି ପରିପାକଶକ୍ତିର ହ୍ରାସତା ହେବାରୁ କ୍ଷୁଧା କମି ହୋଇ ଯାଏ । ଅପରିପାକ ହେତୁ ଉଦରମଧ୍ୟରେ ବାୟୁ ଜନ୍ମେ ଏବଂ ସର୍ବଦା ସେହି ନିମିତ୍ତ ସେମାନଙ୍କ ମନ ସ୍ଫୂର୍ତ୍ତିବିହୀନ ଥାଏ । କୋଷ୍ଠ ପରିଷ୍କାର ହୁଏ ନାହିଁ । ସେ ହେତୁରୁ ଉଦରରେ କେତେବେଳେ ବେଦନା ହୁଏ । ପରିପାକର ଔଷଧରେ ଏବଂ ବିରେଚକ ଔଷଧରେ କେତେବେଳେ କ୍ଷଣିକ ଶାନ୍ତି ବିଧାନ ହୁଏ ସତ୍ୟ, କିନ୍ତୁ ତହିଁରେ ବିଶେଷ ଉପକାର ନ ହୋଇ କ୍ରମେ କୋଷ୍ଠ ଅତ୍ୟନ୍ତ ବଦ୍ଧ ହୁଏ । ସେ ସମୟରେ ନିଦ୍ରାବସ୍ଥାରେ ଅଧିକ ପରିମାଣରେ ଶୁକ୍ର ନିର୍ଗତ ହୁଏ । ଏହି ଶୋଚନୀୟ ଅବସ୍ଥାର କାରଣ କେହି ପ୍ରଶ୍ନ କଲେ ସେମାନେ ଲଜ୍ଜାବଶତଃ ତାହାର ପ୍ରକୃତ ଉତ୍ତର ଦେଇ ନ ପାରି ଅତିଶୟ ଦୁଃଖ ପ୍ରକାଶ କରନ୍ତି ।

ପୀଡ଼ା କ୍ରମେ କ୍ରମେ ଅଧିକ ହେଲେ କପାଳରେ ପ୍ରାୟ ବାମଦିଗରୁ ଦକ୍ଷିଣଦିଗ ବ୍ୟାପି ଲମ୍ବ ଦାଗ ହୁଏ । କପାଳ ଚର୍ମରେ ଠାଣ ନ ରହି କୁଞ୍ଚିତ ହୋଇଯାଏ । ସ୍ଥାନେ ସ୍ଥାନେ ଶିରା ସବୁ ସୂକ୍ଷ୍ମ ସୂକ୍ଷ୍ମ ହୋଇଯାଏ ଏବଂ ଅଣ୍ଡକୋଷମଧ୍ୟରେ କେତେଗୁଡ଼ିଏ କଠିନ ଗ୍ରନ୍ଥି ଦୃଷ୍ଟ ହୁଏ । ପୁନଃପୁନ ପ୍ରସ୍ରାବ ତ୍ୟାଗ କରିବାକୁ ଇଚ୍ଛା ହୁଏ ଏବଂ ପ୍ରସ୍ରାବ ତ୍ୟାଗ-କରିବା ସମୟରେ ସମସ୍ତ ପ୍ରସ୍ରାବ ମୂତ୍ରକୋଷରୁ ନିର୍ଗତ ହୁଏ ନାହିଁ, ସେ ସମୟରେ ଅତିଶୟ କଷ୍ଟ ବୋଧ ହୁଏ । କେତେବେଳେ କୋଷ୍ଠ ଅତ୍ୟନ୍ତ ବଦ୍ଧ ହୁଏ । ଏବଂ ଗୁହ୍ୟଦ୍ୱାରରୁ ରକ୍ତ ନିଃସରଣ ହୁଏ ।

ଅଳ୍ପ ବୟସରେ ହସ୍ତମୈଥୁନ ଅଭ୍ୟାସ କଲେ କ୍ରମେ ଚକ୍ଷୁର ଚତୁର୍ଦ୍ଦିଗରେ କୃଷ୍ଣବର୍ଣ୍ଣ ରେଖା ପଡ଼େ । ବୟଃପ୍ରାପ୍ତ ହେଲେ ଦାଢ଼ୀ ନିଶ ଭଲରୂପେ ପ୍ରକାଶ ପାଏ ନାହିଁ । ଅତି କୋମଳ ଓ ପାତଳ ହୋଇ ଉଠେ । ମସ୍ତକର କେଶ ମଧ୍ୟ କ୍ରମେ କ୍ରମେ ପାତଳ ହୁଏ । ଯଦି ଚିକିତ୍ସା ବା ଅନ୍ୟ କାରଣରେ ଶୁକ୍ର କ୍ଷୟ ବନ୍ଦ ହୁଏ ତେବେ କେଶ ପୁଷ୍ଟ ଓ ଘନ ହୁଏ ଏବଂ କେଶର ମୂଳରେ ସାରଭାଗ ଅଧିକ ବର୍ଦ୍ଧିତ ହୁଏ ବୋଲି କେଶ କ୍ରମେ କ୍ରମେ ସ୍ୱାଭାବିକ ଅବସ୍ଥା ପ୍ରାପ୍ତ ହୁଏ ।

ହସ୍ତମୈଥୁନରେ ଏକାନ୍ତ ଅନୁରକ୍ତ ହେଲେ କୌଣସି ଯୁବା ବ୍ୟକ୍ତି ଶୀର୍ଣ୍ଣ ହୋଇ ପଡ଼ନ୍ତି । ସେମାନଙ୍କର ସ୍ୱାଭାବିକ ସ୍ୱର ବିକୃତାବସ୍ଥା ପ୍ରାପ୍ତ ହୁଏ । ସ୍ୱରର ଗମ୍ଭୀରତା-ଶକ୍ତି ହ୍ରାସ ହୁଏ ଏବଂ କ୍ରମେ ସ୍ତ୍ରୀବ୍ୟକ୍ତିର ସ୍ୱର ପରି ମୃଦୁ ହୋଇଯାଏ । ବାଲ୍ୟାବସ୍ଥାରେ

ଏହି ସବୁ ରୋଗିଙ୍କର କେତେବେଳେ ୨ ଅଳ୍ପ ଅଳ୍ପ ପ୍ରସ୍ରାବ ନିଃସରଣ ହୁଏ । କେତେବେଳେ କେତେବେଳେ ଶୁକ୍ର ସହିତ ରକ୍ତ ନିଃସରଣ ହୁଏ । ଏମାନଙ୍କର ପ୍ରସ୍ରାବ ଅତି ପାତଳ ଓ ପରିମାଣରେ ଅଧିକ ହୁଏ, ଏମାନେ ବୟଃପ୍ରାପ୍ତ ହେଲେ ସ୍ତ୍ରୀ ସଂସର୍ଗ ଇଚ୍ଛା ପାନ୍ତି ନାହିଁ ଏବଂ କ୍ରମେ ୨ ପ୍ରାୟ ପୁରୁଷତ୍ୱ-ବିହୀନ ହୋଇଯାନ୍ତି । ଏମାନେ ସ୍ତ୍ରୀସଂସର୍ଗ କରିବାକୁ ଗଲେ ଲିଙ୍ଗର ବଳ ଅତି କମ ହୁଏ ଓ ଅତି ଅଳ୍ପକାଳ ମଧ୍ୟରେ ଶୁକ୍ର ନିର୍ଗତ ହୋଇଯାଏ । ଏହି ହେତୁରୁ ଏମାନେ ସ୍ତ୍ରୀସଂସର୍ଗ ଅପେକ୍ଷା ହସ୍ତମୈଥୁନରେ ଅଧିକ ସୁଖ ବୋଧ କରନ୍ତି । ଅହୋ ! ଏଥିର ବିଷମୟ ଫଳ ସେମାନେ ଏପର୍ଯ୍ୟନ୍ତ ଜାଣି ପାରନ୍ତି ନାହିଁ । ଯେଉଁ ସମସ୍ତ ପୀଡ଼ା ଓ ଅସୁଖ ସେମାନଙ୍କୁ ଆକ୍ରମଣ କରେ, ସେମାନେ ମନେ କରନ୍ତି ଯେ ଏ ସମସ୍ତ ଅନ୍ୟ କାରଣରେ ଉତ୍ପନ୍ନ ହୋଇଅଛି । କୌଣସି ପ୍ରକାର ଚିକିତ୍ସା-ଦ୍ୱାରା ଶାନ୍ତି ପ୍ରାପ୍ତ ନ ହୋଇ ସେମାନେ କ୍ରମେ ନିରାଶ ହୁଅନ୍ତି । ଏଣେ ଚିକିତ୍ସକ-ନିକଟରେ ମଧ୍ୟ ହସ୍ତମୈଥୁନର କଥା ବ୍ୟକ୍ତ କରି ପାରନ୍ତି ନାହିଁ । ଅନଭିଜ୍ଞ ଚିକିତ୍ସକ ମଧ୍ୟ ହସ୍ତମୈଥୁନର ବିଷୟ ଅନୁସନ୍ଧାନ କରନ୍ତି ନାହିଁ । କଦାଚିତ୍ ପ୍ରଶ୍ନ କରି ସଦୁତ୍ତର ନ ପାଇ ରୋଗର ମୂଳକାରଣ ପ୍ରତି ଅନୁଧାବନ ନ କରି କେବଳ ରୋଗର ଉପସ୍ଥିତ ଲକ୍ଷଣର ପ୍ରତୀକାର କରିବାକୁ ଚେଷ୍ଟା କରନ୍ତି । ରୋଗୀ ହସ୍ତମୈଥୁନ କରଇ କି ନା ଏ କଥା ପୁନଃପୁନ ପ୍ରଶ୍ନ କରିବାକୁ ଲଜ୍ଜାକର ମନେ କରି ଚିକିତ୍ସକ ତାହାର ବିଷୟ ବିସ୍ତାରିତରୂପେ ପ୍ରଶ୍ନ କରିବାକୁ କ୍ଷାନ୍ତ ହୁଅନ୍ତି ଏବଂ ଚିକିତ୍ସକଙ୍କ ନିକଟରେ ଏପରି କଦର୍ଯ୍ୟ-ଅଭ୍ୟାସର କଥା ପ୍ରକାଶ କଲେ ଚିକିତ୍ସକ କାଲେ ଅବଜ୍ଞା କରିବେ, ଏହି ବିବେଚନା କରି ରୋଗୀ କୌଣସି କ୍ରମରେ ବ୍ୟକ୍ତ କରିବାକୁ ଅଭିଳାଷ କରଇ ନାହିଁ । ଏହିରୂପେ ଚିକିତ୍ସକ ମଧ୍ୟ ରୋଗର କାରଣ ବିଶେଷ ନିର୍ଦ୍ଦେଶ କରି ପାରନ୍ତି ନାହିଁ । ରୋଗୀ ମଧ୍ୟ ଚିକିତ୍ସକଙ୍କର ଅନୁମାନିକ ଚିକିତ୍ସାରେ ଶାନ୍ତି ପ୍ରାପ୍ତ ନ ହୋଇ ଦିନକୁ ଦିନ ହତାଶ ହୋଇପଡ଼େ । କେତେବେଳେ ୨ ରୋଗିର ଶ୍ରବଣଶକ୍ତିର ମଧ୍ୟ ହ୍ରାସ ହୁଏ । ଅନେକ ରୋଗିଙ୍କ ପକ୍ଷରେ ଦେଖାଯାଇଅଛି ଯେ ଚିକିତ୍ସାଦ୍ୱାରା ଶୁକ୍ରନିର୍ଗମନ ବନ୍ଦ ହେଲେ ଶ୍ରବଣଶକ୍ତିର ଦୋଷ ମଧ୍ୟ କ୍ରମେ କ୍ରମେ ସଂଶୋଧିତ ହୋଇଯାଏ ।

ଶୁକ୍ର କ୍ରମେ ପାତଳ ହୋଇଯାଏ । ଏମନ୍ତ କି ଜଳ ଯେପ୍ରକାର ବସ୍ତ୍ରରେ ଲାଗି ଶୁଷ୍କ ହୋଇଯାଏ ଏବଂ ଲୁଗା ଉପରେ କୌଣସି ଚଡ଼ଚଡ଼ିଆ ଦାଗ ନ ଥାଏ ସେହିପରି ପାତଳ ଶୁକ୍ର ଲୁଗାରେ ପଡ଼ି ଶୁଖି ଗଲେ କୌଣସି ପ୍ରକାର ଦାଗ ରହଇ ନାହିଁ । ଯାହାର ଶୁକ୍ର ଏତେ ପାତଳ ହୁଏ, ତାହାର ସନ୍ତାନଉତ୍ପାଦିକା ଶକ୍ତି ମଧ୍ୟ ନଷ୍ଟ ହୁଏ । ଚିକିତ୍ସାଦ୍ୱାରା ଏପ୍ରକାର ଶୁକ୍ର ମଧ୍ୟ ଗାଢ଼ ହେବାର ଦେଖା ଯାଇଅଛି । ଏବଂ ଏପ୍ରକାର ରୋଗୀ ମଧ୍ୟ ଆରୋଗ୍ୟ ଲାଭ କରି ସନ୍ତାନ ଉତ୍ପାଦନ କରିବାର ଦେଖା ଯାଇଅଛି ।

ହସ୍ତମୈଥୁନରେ ଧାରଣା ଶକ୍ତି ଏକବାରେ କମି ଯାଏ, ଏମନ୍ତ କି ସ୍ତ୍ରୀଲୋକର ସ୍ପର୍ଶମାତ୍ରକେ ଶୁକ୍ର ବସ୍ତ୍ରରେ ନିର୍ଗତ ହୁଏ । ଶୁକ୍ର ପାତଳ ହେବା ସଙ୍ଗେ ସଙ୍ଗେ ଧାରଣା ଶକ୍ତିର ହ୍ରାସ ହୁଏ । କେତେକ ରୋଗିଙ୍କର ସ୍ତ୍ରୀ ବ୍ୟକ୍ତିଙ୍କ ନିକଟକୁ ଗଲେ ସଂସର୍ଗ ହେବାର ପୂର୍ବକ୍ଷଣରେ ଜଳବତ୍ ଶୁକ୍ର ନିର୍ଗତ ହୋଇଯାଏ । ଏପରି ରୋଗିମାନଙ୍କ ତଦବସ୍ଥାରେ ସନ୍ତାନ ଉତ୍ପାଦିକା ଶକ୍ତି ହୋଇଅଛି ।

ଦୀର୍ଘକାଳ ହସ୍ତମୈଥୁନଦ୍ୱାରା ଶରୀର କାତର ହେଲେ କେତେବେଳେ ଯୁବକମାନଙ୍କୁ ମୂର୍ଚ୍ଛା ( Epilepsy ) ରୋଗାକ୍ରାନ୍ତ ହେବାର ଦେଖା ଯାଇଅଛି । ମୂର୍ଚ୍ଛାରୋଗ ଏହିକାରଣରୁ ଉତ୍ପନ୍ନ ହୋଇଅଛି କି ନା, ରୋଗିର ପ୍ରସ୍ରାବ ପରୀକ୍ଷା କଲେ ଜଣାଯିବ । ତଦ୍ବିଷୟ ବିସ୍ତାରିତରୂପେ ପରେ ପ୍ରକାଶ ହେବ । କେବେ କେବେ ଏକପ୍ରକାର ମେହ ( Bastard clap ) ଏହିପ୍ରକାର ରୋଗିମାନଙ୍କୁ ଆକ୍ରମଣ କରଇ । ଏହା ହେଲେ ମୂତ୍ରପ୍ରଣାଳୀରେ ଜ୍ୱାଳା ବେଦନା ଉପସ୍ଥିତ ହୁଏ ଏବଂ କ୍ଷଣେ କ୍ଷଣେ ପ୍ରସ୍ରାବ କରିବାର ଇଚ୍ଛା ହୁଏ ।

କେବେ କେବେ ଅର୍ଦ୍ଧାଙ୍ଗର ( Paraplegia ) ଅବସନ୍ନତା ଉପସ୍ଥିତ ହୁଏ । ଅନ୍ୟ କାରଣରେ ଯେ ଅର୍ଦ୍ଧାଙ୍ଗର ଅବସନ୍ନତା ଉପସ୍ଥିତ ହୁଏ ତହିଁରେ ଓ ଏଥିରେ ପ୍ରଭେଦ ଏହି ଯେ ଏପ୍ରକାର ଅର୍ଦ୍ଧାଙ୍ଗ ଅବସାଦ-ଗ୍ରସ୍ତ ରୋଗୀ କୌଣସି ଲୋକ ଦେଖିଲେ ଅଧିକ ଜଡ଼ଭାବେ ଚାଲେ ଏବଂ ଚାଲିବା ସମୟରେ ଯଷ୍ଟି ଆବଶ୍ୟକ ହୁଏ । କିନ୍ତୁ ଯେତେବେଳେ ଏକାକୀ ବା ହୃଦୟର ବନ୍ଧୁ ବାନ୍ଧବଙ୍କ ସହିତ ଚାଲଇ ସେ ସେତେବେଳେ ଅପେକ୍ଷାକୃତ ଭଲରୂପେ ଚାଲେ ।

ଏକାଦି କ୍ରମେ ଦୀର୍ଘକାଳ ଅଧିକ ପରିମାଣରେ ଶୁକ୍ର କ୍ଷୟ ହେଲେ ଦର୍ଶନଶକ୍ତିର ହ୍ରାସତା ଜନ୍ମେ । ଚକ୍ଷୁ ଦେଖିବାକୁ ଜଳଯୁକ୍ତ ଏବଂ ଜ୍ୟୋତିହୀନ ବୋଧ ହୁଏ । ସମ୍ମୁଖରେ କ୍ଷୁଦ୍ର କ୍ଷୁଦ୍ର ପୋକ ସର୍ବଦା ଉଡ଼ୁଥିବାପରି ଜଣାଯାଏ । ଚକ୍ଷୁର ତାରା ପ୍ରଶସ୍ତ ହୁଏ । ଅପରିଚିତ ଲୋକର ମୁଖକୁ ସ୍ପଷ୍ଟରୂପେ ଚାହିଁ କଥୋପକଥନ କରି ପାରଇ ନାହିଁ ।

ଦୃଷ୍ଟିଶକ୍ତିର ହ୍ରାସତା ହେଲେ ରୋଗୀ ଭୀତ ହୁଏ । ସେସମୟରେ ସେ ଜାଣିପାରେ ଯେ ହସ୍ତମୈଥୁନ କରିବାରେ ଏ ବିପଦ ଘଟିଅଛି । ହସ୍ତମୈଥୁନ ତ୍ୟାଗ କଲେ ଦୃଷ୍ଟିଶକ୍ତି ପୁନରପି କ୍ରମେ ଭଲ ହୁଏ । ଯେଉଁ ସକଳଲକ୍ଷଣ ପ୍ରକାଶ କରାଗଲା ସେ ସବୁ ଧାତୁଦୌର୍ବଲ୍ୟର ସଙ୍ଗେ ସଙ୍ଗେ ପ୍ରାପ୍ତ ଥାଏ । କିନ୍ତୁ ତନ୍ମଧ୍ୟରେ କେତେଗୁଡ଼ିଏ ଲକ୍ଷଣ ଅନ୍ୟ ରୋଗର ସଙ୍ଗେ ମଧ୍ୟ ଥାଏ । ଅତଏବ କେତେଗୁଡ଼ିଏ ଲକ୍ଷଣ ହେଲେ ତାହା ଧାତୁ ଦୌର୍ବଲ୍ୟ ରୋଗ ବୋଲି ନିଃସଂଶୟରୂପେ ନିର୍ଣ୍ଣୟ କରିବାର ଉଚିତ ନୁହେ ।

ଦୀର୍ଘକାଳ ହସ୍ତମୈଥୁନରେ ଆସକ୍ତ ରହିଲେ କ୍ରମେ ପୁରୁଷତ୍ୱର ହାନି ହୁଏ । ପ୍ରସ୍ରାବ କରିବା ସମୟରେ, ଶୌଚ ଯିବା ସମୟରେ କୁନ୍ଥାଣ ଦେଲେ ଏବଂ ସ୍ତ୍ରୀ ଷ୍ଟୀଳେଷ ଦେଖିଲେ, ଶିଶ୍ନଦ୍ୱାରରୁ ଏକପ୍ରକାର ନାଳଯୁକ୍ତ ସାଦା ରଙ୍ଗ ଜଳୀୟ ପଦାର୍ଥ ନିଃସରଣ ହୁଏ । ତହିଁରେ ସର୍ବଦା ଲୁଗାରେ ଦାଗ ଲାଗେ । ଅଣୁବୀକ୍ଷଣ ଯନ୍ତ୍ରଦ୍ୱାରା ଦେଖିଲେ ସେ ଯେ ପାତଳ ଶୁକ୍ର ତାହା ନିଃସଂଶୟରୂପେ ପ୍ରମାଣ ହୁଏ । ଶୁକ୍ରମଧ୍ୟରେ ଯେ ଅତି କ୍ଷୁଦ୍ରତମ କୀଟାଣୁ ଥାଏ ତାହାର ଦୁଇଅଂଶ, ଅଣ୍ଡାକୃତି ଏକ ମସ୍ତକ ଓ ଲମ୍ବ-ସୂତ୍ରବତ୍ ଲାଙ୍ଗୁଳ ।

ଏହି କୀଟ ମଧ୍ୟରୁ ଗୋଟିଏ ଜରାୟୁମଧ୍ୟରେ ଶୋଣିତଦ୍ୱାରା ପ୍ରତିପାଳିତ ହୋଇ ଭବିଷ୍ୟତରେ ଶିଶୁରୂପେ ପରିଣତ ହୁଏ । ଏହା ସର୍ବାବୟବସମ୍ପନ୍ନ ହେଲେ ସନ୍ତାନ ସୁସ୍ଥ, ବଳିଷ୍ଠ ଓ ଦୀର୍ଘଜୀବୀ ହୁଏ । ଏହାର ଅବୟବର ଦୋଷ ଥିଲେ ସନ୍ତାନ ରୁଗ୍ଣ ଓ କ୍ଷୀଣଜୀବୀ ହୁଏ ।

ବହୁକାଳ ହସ୍ତମୈଥୁନରେ ଶୁକ୍ରର ସ୍ୱଭାବର ଅନେକ ପରିବର୍ତ୍ତନ ହୁଏ, ସୁତରାଂ ଏହା ମଧ୍ୟସ୍ଥ କ୍ଷୁଦ୍ର କୀଟାଣୁର ଅବୟବର ଅନେକ ପରିବର୍ତ୍ତନ ହୁଏ । କାହାର ଲାଙ୍ଗୁଳ ଛିନ୍ନ ହୋଇ ଯାଏ । କାହାର ମଧ୍ୟ ମସ୍ତକର ଅଳ୍ପ ପରିବର୍ତ୍ତନ ହୁଏ । କାହାର ମସ୍ତକ ଛୋଟ ଓ ଶୁଷ୍କ ପ୍ରାୟେ ହୋଇ ଯାଏ ।

ଅଧିକ ଶୁକ୍ରବ୍ୟୟଜନିତ ମନ ଦୁର୍ବଳ ହେଲେ ଆତ୍ମହତ୍ୟା କରିବାର ଇଚ୍ଛା କେବେ୨ ବଳବତୀ ହୁଏ । କେବେ୨ ସନ୍ନ୍ୟାସରୋଗର ବାହ୍ୟିକ ଲକ୍ଷଣାଦି ବର୍ତ୍ତମାନ ଥାଏ, କିନ୍ତୁ ମସ୍ତିଷ୍କ ପରୀକ୍ଷିଲେ ତାହାର କୌଣସି ଚିହ୍ନ ଦେଖାଯାଏ ନାହିଁ, ଶିଶ୍ନ କ୍ରମେ୨ ଆକୃତିରେ ଛୋଟ ଓ ଶିଥିଳ ହୋଇଯାଏ ମୁଷ୍କକୋଷ ଛୋଟ ହୁଏ, ଓ ତାହାର ଅଭ୍ୟନ୍ତରସ୍ଥ ପରଦା ଜଳଯୁକ୍ତ ହୁଏ ଏବଂ ଗୋଲାପିରଙ୍ଗ ହୁଏ । ଶୁକ୍ରକୋଷର ନିକଟସ୍ଥ ମୂତ୍ରକୋଷର ପରଦା ସଙ୍କୁଚିତ ହୁଏ, ଏବଂ ଉପସ୍ଥ ସ୍ଥାନେ୨ କଠିନ ହୁଏ । ଲିଙ୍ଗ କାଟିଲେ ରକ୍ତହୀନ ବୋଧ ହୁଏ । ଫଳତଃ ଭଲରୂପେ ପରୀକ୍ଷା କରି ଦେଖିଲେ ଜନନେନ୍ଦ୍ରିୟର ଶିଥିଳତା ଓ ବିକୃତାବସ୍ଥା ପ୍ରତିପନ୍ନ ହୁଏ । ମେରୁଦଣ୍ଡ ଓ ମସ୍ତିଷ୍କ ସୃଷ୍ଟିର ଆକୃତିରେ ବିଶେଷ ପରିବର୍ତ୍ତନ ବୋଧ ହୁଏ ନାହିଁ, କିନ୍ତୁ କ୍ରିୟାରେ ସମୟେ୨ ଏତେ ପରିବର୍ତ୍ତନ ବୋଧ ହୁଏ ଯେ ତାହା ଦେଖି ବହୁଦର୍ଶନଶାଳୀ ଚିକିତ୍ସକ ମସ୍ତିଷ୍କର ଓ ମେରୁଦଣ୍ଡର ଗୁରୁତର ବିକୃତି ଅନୁଭବ କରି ରୋଗୀ ପ୍ରତି କଠିନ ଔଷଧ ବ୍ୟବହା-ରରେ ପ୍ରବୃତ୍ତ ହୁଅନ୍ତି । ଦୀର୍ଘକାଳ ହସ୍ତମୈଥୁନଦ୍ୱାରା ଶୁକ୍ର ବ୍ୟୟ କଲେ ଉନ୍ମାଦ ରୋଗର ଆବିର୍ଭାବ ହୁଏ । ଏବଂ ଅନଭିଜ୍ଞ ଚିକିତ୍ସକ ବିଶେଷ କାରଣ ନିର୍ଦ୍ଦେଶ କରି ନ ପାରି ସାଧାରଣ ଉନ୍ମାଦ ରୋଗର ଚିକିତ୍ସାରେ ପ୍ରବୃତ୍ତ ହୁଅନ୍ତି । କିନ୍ତୁ ରୋଗୀ

ତହିଁରେ କୌଣସି ଶାନ୍ତି ପ୍ରାପ୍ତ ନ ହୋଇ କ୍ରମେ ଦୁର୍ବଳ ହୋଇ ଅକାଳେ କାଳ-ଗ୍ରାସରେ ପତିତ ହୁଏ । ସ୍ମରଣ ଶକ୍ତି ହ୍ରାସ ହୁଏ । ରୋଗୀ ପୂର୍ବେ ଯାହା ଦେଖିଅଛି ବା ଶୁଣିଅଛି ତାହା ଏକପ୍ରକାର ଭଲରୂପେ ସ୍ମରଣ ଥାଏ; କିନ୍ତୁ ଅଧୁନା ଯାହା ଦେଖେ, ଶ୍ରବଣ କରେ ବା ଅଧ୍ୟୟନ କରେ ତାହା ଭଲରୂପେ ସ୍ମରଣ ରହେ ନାହିଁ । କଥୋ-ପକଥନ ସମୟରେ କୌଣସି କଥା ମନରେ ପଡ଼ି ମଧ୍ୟ ପଡ଼ଇ ନାହିଁ । ରୋଗୀ ସେତେବେଳେ ମନେ ଅତିଶୟ ବ୍ୟାକୁଳ ହୁଏ । ରୋଗୀ କ୍ରମେ ଅନ୍ୟମନସ୍କ ହୁଏ । ଏକ ବିଷୟ ଶ୍ରବଣ କରି ଅନ୍ୟ ବିଷୟ ଭାବିବାକୁ ଆରମ୍ଭ କରେ । କୌଣସି ଏକ ବିଷୟରେ ନିପୁଣ ହୋଇ ପାରେ ନାହିଁ । ମନ ଏକ ବିଷୟରୁ ଅନ୍ୟ ବିଷୟରେ ଖସି ଯାଏ । ଯଦି କେବେ କୌଣସି ବିଷୟ କାହାର ନିକଟରେ ବର୍ଣ୍ଣନ କରିବାକୁ ଆରମ୍ଭ କରେ ସେତେବେଳେ କିୟଦଂଶ ବୋଲି କିୟଦଂଶ ଭୁଲିଯାଏ । ଏବଂ ଶ୍ରୋତାକୁ ପ୍ରଶ୍ନ କରେ "ମୁଁ କଣ କହୁଥିଲି" ଯଦି ଶ୍ରୋତା ମନେ କରି ଦେଇ ପାରେ ତେବେ ପୁନର୍ବାର କାହାଣୀ ବର୍ଣ୍ଣନ କରିବାକୁ ଆରମ୍ଭ କରେ । ନତୁବା ସେ ସେହି ସ୍ଥାନରେ ବର୍ଣ୍ଣନ କରିବାକୁ କ୍ଷାନ୍ତ ହୁଏ । ମନ ସର୍ବଦା ବିଷଣ୍ଣ ଭାବ ଧାରଣ କରିଥାଏ । କୌଣସି କାର୍ଯ୍ୟ ଭଲ ଲାଗଇ ନାହିଁ । କୌଣସି କାର୍ଯ୍ୟରେ ମନ ଭଲ-ରୂପେ ନିବିଷ୍ଟ ହୁଏ ନାହିଁ । କୌଣସି ଅବସ୍ଥାରେ ସୁଖ ବୋଧ ହୁଏ ନାହିଁ । ନିତ୍ୟ-କ୍ରିୟା ମଧ୍ୟ ଅସୁଖକର ବୋଧ ହୁଏ, ଜୀବନ ଭାର ବୋଧ ହୁଏ । ପୃଥିବୀ ଅସାର ଓ ଦୁଃଖର ଆଗାର ବୋଲି ବୋଧ ହୁଏ, ସଂସାରରୁ ଅପସୃତ ହେବାର ମନକୁ ଭଲ ଲାଗେ । ଅଳ୍ପ ଉତ୍ୟକ୍ତିରେ ମଧ୍ୟ ବିରକ୍ତି ଉପସ୍ଥିତ ହୁଏ । ଆଜି ଯାହା ସନ୍ତୋଷର କାରଣ, କାଲି ତାହା ଅସନ୍ତୋଷର କାରଣ ବୋଲି ପରିଗଣିତ ହୁଏ । ମନର ଅବସ୍ଥା ଠିକ୍ ରହଇ ନାହିଁ । ରୁଷ୍ଟି ଓ ତୁଷ୍ଟି ପ୍ରତିକ୍ଷଣେ ହୁଏ । ଚିତ୍ତ ଅବ୍ୟବସ୍ଥିତ ହୋଇ ପଡ଼େ । ବିବେଚନାର ମତଲବର ଓ ପ୍ରତିଜ୍ଞାର ସ୍ଥିରତା ରହଇ ନାହିଁ । ଶାରୀରିକ ସାମାନ୍ୟ ଅସୁଖ ମଧ୍ୟ ଗୁରୁତର ବୋଧ ହୁଏ । ପରିପାକ ଭଲ ହୁଅଇ ନାହିଁ । ପେଟ-ମଧ୍ୟରେ ସାମାନ୍ୟ ଭୁଟ ଭୁଟ ହେଲେ ମନ ସେହି ଆଡ଼କୁ ଯାଏ ଏବଂ ପେଟରେ ହାତ ବୁଲାଇ ପେଟର ଦୁରବସ୍ଥା ଚିନ୍ତାରେ ଅନେକ ସମୟ ନଷ୍ଟ ହୁଏ । ହସ୍ତ, ପଦ, ଚକ୍ଷୁ, ମୁଖ କେବେ କେବେ ଜ୍ୱଳି ଉଠେ । ବ୍ରହ୍ମରନ୍ଧ୍ର ଜ୍ୱଳି ଉଠେ ଏବଂ ମସ୍ତକ ଅବସନ୍ନ ଓ ଗରମ ବୋଧ ହୁଏ । ଗୋଲାପଜଳ ଆଦି ଶୀତଳ ଦ୍ରବ୍ୟ ବ୍ୟବହାର କଲେ ଶରୀର ଭଲ ବୋଧ ହୁଏ । ବାଟ ଚାଲି ଶରୀର ଓ ମସ୍ତକ ଝାଳ ପଡ଼ଇ, ବୋଧ ହୁଏ ଯେପରି ପଡ଼ି ଯାଉଅଛି । ଉଚ୍ଚ ସ୍ଥାନକୁ ଆରୋହଣ କରିବାର ଓ ଉଚ୍ଚ ସ୍ଥାନରୁ ଅବତରଣ କରି-ବାର କଷ୍ଟକର ବୋଧ ହୁଏ । କିଛି ପରିଶ୍ରମ କଲେ ଛାତି ଧକ୍ ଧକ୍ ହୁଏ । ବୋଧ ହୁଏ

ଯେମନ୍ତ କୌଣସି କଠିନ ହୃଦ୍‌ରୋଗ ହୋଇଅଛି । ସମୟେ୨ ଓଷ୍ଠ ଶୁଷ୍କ ବୋଧ ହୁଏ । ଜଳପାନ କରିବାକୁ ଅଧିକ ଇଚ୍ଛା ହୁଏ । ମାନସିକଚିନ୍ତା କରିବାର ଅତି କ୍ଳେଶକର ବୋଧ ହୁଏ । କିଛିକାଳ ଚିନ୍ତାରେ ନିମଗ୍ନ ରହିଲେ ମସ୍ତକ ଘୂର୍ଣ୍ଣିଯମାନ ହୁଏ, ମନ ଅବସନ୍ନ ହୁଏ, ଚକ୍ଷୁକୁ ଭଲ ଦିଶଇ ନାହିଁ । ଶରୀର ଦୁର୍ବଳ ବୋଧ ହୁଏ । ଡେଡେ-ବେଳେ ବିଶ୍ରାମ କରିବାକୁ ଇଚ୍ଛା ହୁଏ ଏବଂ ଶରୀର ଅଳସ ହୋଇ ପଡ଼େ । ବିଶ୍ରାମ କଲେ ଶରୀର ଆରାମ ପ୍ରାପ୍ତ ହୁଏ ନାହିଁ । ମନ ସର୍ବଦା ଡରି ଡରି ଥାଏ । ଜନସମାଜକୁ ଯିବା ପାଇଁ ବେଶୀ ଲଜ୍ଜା ବୋଧ କରେ । ମନ ଖୋଲି କଥୋପକଥନ କରିବାର କଷ୍ଟ ସାଧ୍ୟ ହୁଏ ।

"ଗୋପନରେ ମୁଁ ଯେଉଁ କୁକର୍ମ୍ମ କରେଁ ତାହା କେହି ଜାଣିଅଛି" ଇତ୍ୟାଦ ନାନାପ୍ରକାର ଚିନ୍ତା ସର୍ବଦା ମନରେ ଜାଗରୂକ ଥାଏ । ଏହି ନିମିତ୍ତ ସର୍ବଦା ଜନାକୀର୍ଣ୍ଣ ସ୍ଥାନକୁ ଯାଇ କଥୋପକଥନ କରିବା ଭଲ ଲାଗଇ ନାହିଁ । ନିର୍ଜ୍ଜନରେ ଏକାକୀ ରହିବାକୁ ଭଲ ବୋଧ ହୁଏ । ସମସ୍ତଙ୍କ ସହିତ ମୁଣ୍ଡ ଟେକି ଚକ୍ଷୁ ମେଲି କଥା କହିବା କଷ୍ଟକର ବୋଧ ହୁଏ । ମନର ସାହସ ନଷ୍ଟ ହୁଏ । ଦୃଢ଼ତା ଯାଏ । ଅମ୍ମର୍ଷା ଓ ସ୍ଥିରପ୍ରତିଜ୍ଞତା ସମସ୍ତ ଯାଏ । ଧୀଶକ୍ତି ନଷ୍ଟ ହୁଏ । ଧର୍ମ୍ମବୁଦ୍ଧି କ୍ରମେ ଦୁର୍ବଳ ହୁଏ । ସ୍ୱତ୍ରାଶୟତା ନଷ୍ଟ ଓ ବୀରତ୍ୱ ନଷ୍ଟ ହୁଏ । ଉଚ୍ଚାଭିଳାଷ ବିନଷ୍ଟ ହୁଏ । ଉଦ୍ୟମଶୀଳତା ଚାଲି ଯାଏ । ଜୀବନର ଶୃଙ୍ଖଳ୍ୟ ଏକକାଳରେ ବିନଷ୍ଟ ହୁଏ । ମନ ଯେତେଦୂର ସମ୍ଭବ ତେତେଦୂର ନିସ୍ତେଜ ହୋଇ ମନୁଷ୍ୟକୁ ଜନସମାଜର ଅନୁପଯୁକ୍ତ କରେ ଓ ମନୁଷ୍ୟତ୍ୱ ନଷ୍ଟ ହୁଏ । ଯେଉଁ କାର୍ଯ୍ୟ କରିବାକୁ କ୍ଷମତା ଥାଏ ତହିଁରେ ସାହସ ହୁଏ ନାହିଁ ; ହିତାହିତ ଜ୍ଞାନ ନଷ୍ଟ ହୋଇ ପଡ଼େ । ପରିଷ୍କାରରୂପେ କୌଣସି ବିଷୟ ବୁଝିବାର ବା ପ୍ରକାଶ କରିବାର କ୍ଷମତା ହ୍ରାସ ହୁଏ । ସ୍ତ୍ରୀଲୋକଙ୍କ ନିକଟକୁ ଯିବାପାଇଁ ଲଜ୍ଜା ଓ ଭୟ ହୁଏ ଏବଂ କଥା କହିବାକୁ ଭଲ ବୋଧ ହୁଏ ନାହିଁ । ପଛେ ସେମାନଙ୍କର ଦୁଷ୍କର୍ମର ବିଷୟ ଜାଣି ପାରି ସେମାନଙ୍କୁ କେହି ଘୃଣା କରିବ ଏହି ଆଶଙ୍କାରେ ସେମାନେ ଭୀତ ହୁଅନ୍ତି । ଲୋକଙ୍କ ନିକଟରେ ନିଃସଙ୍କୋଚରେ ସୌଜନ୍ୟ ପ୍ରକାଶ କରିବାକୁ ସେମାନେ ପ୍ରାୟ ଅନିଚ୍ଛୁକ ହୁଅନ୍ତି ; ଆହାରର କମ ହୁଏ । ନୀଚସ୍ୱସର୍ଗରେ କୌଣସି ଅସୁଖ ବୋଧ ହୁଏ ନାହିଁ, ବରଂ ଆମୋଦ ବୋଧ ହୁଏ । ଶରୀର ପୁଷ୍ଟ ବଳିଷ୍ଠ ଓ ଦୃଢ଼ ହୁଏ ନାହିଁ । ଦୁର୍ବଳ ପୀଡ଼ାଯୁକ୍ତ ରକ୍ତଶୂନ୍ୟ ହୁଏ । ଚକ୍ଷୁ ବସିଯାଏ । ମୁଖଶ୍ରୀରେ ସାହସ, ମନୁଷ୍ୟତ୍ୱ, ସ୍ଥୈର୍ଯ୍ୟ, ବଳ ବିକ୍ରମ ପ୍ରକାଶମାନ ହୁଏ ନାହିଁ । କେଶ ଦାଢ଼ୀ ଶୀଘ୍ର ପାଚିଲ ହୁଏ । ଅସମୟରେ କେଶ ପାଚିଯାଏ । ଶୀଘ୍ର ବାର୍ଦ୍ଧକ୍ୟ ଉପସ୍ଥିତ ହୁଏ । ଯତ ବେଶୀ ହସ୍ତମୈଥୁନଜନିତ ଦୌର୍ବଲ୍ୟର ସହିତ ଏତଦ୍ଭିନ୍ନ ମାନସିକ ଚିନ୍ତାରେ ବା

ଅଧ୍ୟୟନରେ ନିଯୁକ୍ତ ହୋଇ ମସ୍ତିଷ୍କକୁ ପ୍ରପୀଡ଼ନ କଲେ ତେବେ ଯେ ତହିଁରୁ କି ବିଷମୟ ଫଳ ଉତ୍ପନ୍ନ ହୁଏ ତାହା ନିରୂପ ଅନୁଭବ କରିବା କଠିନ । ପିତା ମାତା ଅଭିଭାବକଗଣ ଓ ଶିକ୍ଷକଗଣଙ୍କର ନିତାନ୍ତ କର୍ତ୍ତବ୍ୟ ଯେ ସେମାନେ ସର୍ବଦା ବାଳକମାନଙ୍କର ସ୍ୱାସ୍ଥ୍ୟ ବିଷୟରେ ଅନୁସନ୍ଧାନ କରିବେ । ସାମାନ୍ୟ ଅସୁଖ ବା ରୋଗ ଉପସ୍ଥିତ ହେଲେ ତହିଁର ନିଗୂଢ଼ କାରଣ ଅନୁସନ୍ଧାନ କରିବେ । ହସ୍ତମୈଥୁନ ଆରମ୍ଭ କଲେ ପ୍ରଥମରେ ଯେ ଯେ ଲକ୍ଷଣାଦିଦ୍ୱାରା ତାହା ଅନୁମାନ କରାଯାଏ ତାହା ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥିବେ । ହସ୍ତମୈଥୁନର ବିଷମୟ ଫଳ ନ ଜାଣି ଅଧିକାଂଶ ବାଳକ ହସ୍ତମୈଥୁନ ଆରମ୍ଭ କରନ୍ତି ଏବଂ ଯେତେବେଳେ କେତେଗୁଡ଼ିଏ ଗୁରୁତର ରୋଗର ଉତ୍ପତ୍ତି ହୁଏ ସେତେବେଳେ ଅନୁସନ୍ଧାନଦ୍ୱାରା ଜାଣି ପାରନ୍ତି ଯେ ହସ୍ତମୈଥୁନ ଏହାର ଏକା ପ୍ରଧାନ କାରଣ । ସେତେବେଳେ ଅଭ୍ୟାସ ବଳବାନ୍ ହୋଇ ଥିବାରୁ ଛାଡ଼ିବା କଠିନ ହୁଏ । ଏବଂ କଷ୍ଟ କଳ୍ପନା କରି ଛାଡ଼ିଲେ ମଧ୍ୟ ଯେଉଁ ଗୁରୁତର ଶାରୀରିକ ଓ ମାନସିକ ଅନିଷ୍ଟ ହୋଇ ଯାଇଅଛି ତାହାର ଆଉ କୌଣସି କ୍ରମେ ସଂଶୋଧନ ହୁଅଇ ନାହିଁ । ସହସ୍ରବାର ଅନୁତାପ କଲେ ମଧ୍ୟ ଅମୂଲ୍ୟ ସ୍ୱାସ୍ଥ୍ୟ ଆଉ ପୁନଃପ୍ରାପ୍ତ ହୁଅଇ ନାହିଁ ।

କିମ୍ବା ଏପରି ଦୁଷ୍କର୍ମ କଲେ ପରିଣାମରେ ଏତେ ଅନିଷ୍ଟ ଘଟିବ ଆଗେ ଜାଣିଥିଲେ ଏଥିରେ ପ୍ରବୃତ୍ତ ହୋଇ ନ ଥାନ୍ତି । ପଶ୍ଚାତ ଅନୁତାପରେ ଶରୀର ଦଗ୍ଧ ହୁଏ । ସଜୀବ ସବଳ କାର୍ଯ୍ୟକ୍ଷମ ମନ, ସର୍ବଶାସ୍ତ୍ରପ୍ରବେଶିନୀ ତୀକ୍ଷ୍ଣବୁଦ୍ଧି ଉଦ୍ୟମଶୀଳ ଓ ଅଧ୍ୟବସାୟଯୁକ୍ତ ଆତ୍ମା ଚିତ୍ତାହ୍ଲାଦ, କ୍ଷମା, ଦୟା ସଂଯମଶକ୍ତି ସ୍ୱାଧୀନତା ଉଲ୍ଲାସ ସ୍ଫୂର୍ତ୍ତି ଏବଂ ବିପଦରେ ଦୃଢ଼ତା ଓ ଅସାମାନ୍ୟ ସାହସ, ବଳ, ବୀର୍ଯ୍ୟ, ଧୈର୍ଯ୍ୟ ଓ ଔଦାର୍ଯ୍ୟ ଆଉ ଫେରି ଆସଇ ନାହିଁ । ହସ୍ତମୈଥୁନକାରୀମାନେ କେବେ୨ ଶରୀରରେ ବେଦନା ଅନୁଭବ କରନ୍ତି । ଛାତିରେ, ପିଠିରେ, ଉରୁରେ ଓ ମସ୍ତକରେ ସଚରାଚର ବେଦନା ଅନୁଭୂତ ହୁଏ । ବେଦନା କେବେ୨ ଏତେ କଷ୍ଟଦାୟକ ହୁଏ ଯେ ବୋଧହୁଏ ଯେମନ୍ତ ଶରୀରର ଅଭ୍ୟନ୍ତରରେ କୌଣସି ଗୁରୁତର ରୋଗ ଜନ୍ମିଅଛି, କିନ୍ତୁ ବାସ୍ତବରେ ତାହା ନୁହେ । ମୁଖରେ କେବେ ତିକ୍ତ ଆସ୍ୱାଦ, କେବେ ମିଷ୍ଟ ଆସ୍ୱାଦ, କେବେ କଟୁ ଆସ୍ୱାଦ ଓ ଦୁର୍ଗନ୍ଧ ଅନୁଭବ ହୁଏ । ମୂତ୍ରରେ ଜାଳ କେବେ୨ ଘନ ଓ ପରିମାଣରେ ଅଳ୍ପ ହୋଇଯାଏ । ଶରୀରର ସ୍ଥାନେ୨ ବିଶେଷତଃ ଉରୁରେ ଓ ପାଦରେ କେହି ଚିମୁଟିଲା ପରି ଜଣାଯାଏ ।

ଶରୀରର ସ୍ଥାନେ ସ୍ଥାନେ ବିଶେଷତଃ ମସ୍ତକରେ କେତେବେଳେ୨ ଦବ୍ ଦବ୍ ହୁଏ । ଶରୀର ସ୍ଥାନେ୨ ସମୟେ୨ ସଙ୍କୋଚିତ ହୁଏ । ଏକ ଜାତେ (ଅର୍ଥାତ୍ ମାଂସପେଶି ସମୟେ୨ ହଲେ) ଏହାକୁ ସାଧାରଣତଃ ସ୍ପନ୍ଦନ କୁହାଯାଏ । ବୃକକ ପାର୍ଶ୍ୱ, ବାହୁ-ଉରୁ, ପାଦ ଏବଂ ଚକ୍ଷୁ ସାଧାରଣତଃ ହଲଇ ।

କେବେ୨ ପେଟର ଦକ୍ଷିଣପାର୍ଶ୍ୱରେ ସଙ୍କୋଚଭାବ ଓ ଈଷତ୍ ବେଦନା ଉପସ୍ଥିତ ହୁଏ । ବୁକର ସମ୍ମୁଖହାଡ଼ର ନିମ୍ନଦେଶରେ କେବେ୨ ବେଦନା ଉପସ୍ଥିତ ହୁଏ । ଟିପିଲେ ବା ଚାପ ଦେଲେ ସେ ବେଦନାର ବୃଦ୍ଧି ହୁଏ । ରୋଗୀ ଏ ବେଦନା ଓ ପେଟର ଦକ୍ଷିଣପାର୍ଶ୍ୱସ୍ଥ ସଙ୍କୋଚଭାବ ହେତୁରୁ ଚିତ୍ ହୋଇ ଶୟନ କରି ପାରେ ନାହିଁ । ଚିତ୍ ହୋଇ ଶୋଇଲେ ଉକ୍ତ ବେଦନା ଓ ସଙ୍କୋଚଭାବ ଉଭୟେ କଷ୍ଟଦାୟକ ହୁଅନ୍ତି । ଏ ସମସ୍ତ ବେଦନା ଓ ସଙ୍କୋଚଭାବ ସମୟେ୨ ବିଶେଷତଃ ଆହାରପରେ ବୃଦ୍ଧି ପାଏ । ଏବଂ ସେ ହେତୁରୁ ନିଶ୍ୱାସ ପ୍ରଶ୍ୱାସ ଘନ୨ ବହେ । ଏହା ମଧ୍ୟ ରୋଗୀର ଅସୁଖର ଏକ କାରଣ ହୁଏ । ଦୃଷ୍ଟିଶକ୍ତି ଓ ଶ୍ରବଣଶକ୍ତି ଦୁର୍ବଳ ହୋଇ ପଡ଼େ । ଚକ୍ଷୁରେ ବେଦନା ଓ କାନରେ ଶୋଁ ଶୋଁ ଓ ଭେଁ ଭେଁ ଶବ୍ଦ ଅନୁଭୂତ ହୁଏ ।

ମସ୍ତକ ଅବସନ୍ନ ବୋଧ ହୁଏ ଏବଂ ଘୂରଇ । ନିମ୍ନକୁ ଦୃଷ୍ଟି କଲେ ଯଥା;— ଶିଢ଼ି-ଉପରେ ଛିଡ଼ା ହୋଇ ତଳକୁ ଚାହିଁଲେ ବୋଧ ହୁଏ ଯେତେ ମୁଣ୍ଡ ବୁଲେଇ ପଡ଼ିଗଲି । ଏହି ଆଶଙ୍କାରେ କୌଣସି ରୋଗୀ ଦ୍ୱିତଳଗୃହରୁ ନିମ୍ନକୁ ଆସି ପାରନ୍ତି ନାହିଁ । ଗାତ୍ର କେତେକ୨ ଥକ ଥକ ହୁଏ । ମନରେ ଭରସା ଓ ସାହସ ରହିଲ ନାହିଁ ।

ନିଦ୍ରା ଭଲରୂପେ ହୁଏ ନାହିଁ । ନିଦ୍ରାବସ୍ଥାରେ ନାନାପ୍ରକାର ସ୍ୱପ୍ନଦର୍ଶନ ହୁଏ । ଏହି ଯୋଗରୁ ସମୟେ୨ ନିଦ୍ରାଭଙ୍ଗ ହୁଏ । ସ୍ୱପ୍ନ ପ୍ରାୟ ଭୟାନକ । ଯେପରି ସର୍ପ, ବ୍ୟାଘ୍ର ପ୍ରଭୃତି ଆକ୍ରମଣ କରୁଅଛନ୍ତି । ହଣାହଣି ମରାମରି ଦୃଷ୍ଟିଗୋଚର ହେଉଅଛି । ଭୟାନକ ଜନ୍ତୁ ଓ ଦୃଶ୍ୟ ଦେଖି ପଳାୟନରେ ଚେଷ୍ଟା ହେଉଅଛି କିନ୍ତୁ ଦ୍ରୁତ ଦୌଡ଼ିବାର ଶକ୍ତି ହେଉ ନାହିଁ । ପାଦ ଉଠୁ ନାହିଁ, ମନ ହତବୁଦ୍ଧି ଓ ହତାଶ ହେଉଅଛି । ମନର ଉଦ୍‌ବେଗ କ୍ରମେ ବୃଦ୍ଧି ହେଉଅଛି । ଏହିପ୍ରକାର ଘୋର ଅସୁଖର ଅବସ୍ଥାରେ କିଛି କାଳ ଯାପନ କରି ଶେଷରୁ ହଠାତ୍ ନିଦ୍ରାଭଙ୍ଗ ହୁଏ । ତେତେବେଳେ ଅସୁଖର ଅନେକ ଶାନ୍ତି ବୋଧ ହୁଏ । ଏ ସମସ୍ତ ମିଥ୍ୟା କିଛି ନୋହେ । ସ୍ୱପ୍ନମାତ୍ର, ଏହି ସଂସ୍କାର ମନରେ ସ୍ଥିର ହୁଏ ଏବଂ କିଛିକାଳ ଏହି ଅବସ୍ଥାରେ ରହି କ୍ରମେ୨ ନିଦ୍ରିତ ହୁଏ । ରୋଗର ପ୍ରାରମ୍ଭରେ ଯେ ସକଳ ସ୍ୱପ୍ନ ଦେଖାଯାଏ ତାହାର ସ୍ୱଭାବ ଏପ୍ରକାର ଭୟାନକ ଓ କଷ୍ଟଦାୟକ ନୁହେ । ସେ ସମୟରେ ଯେମନ୍ତ କୌଣସି ସ୍ତ୍ରୀଲୋକ ସହିତ କଥୋପକଥନ ହେଉଅଛି ବା ଆଲିଙ୍ଗନର ଉପକ୍ରମ ହେଉଅଛି ବା ଆଲିଙ୍ଗନ ବା ସଂସର୍ଗ ହେଉଅଛି, କିନ୍ତୁ ସଂସର୍ଗ ହେବାର ଅବ୍ୟବହିତ ପୂର୍ବେ ହେଉ ବା ସଂସର୍ଗ ମାତ୍ରକେ ହେଉ ଶିଶ୍ନ ସବଳ ହୁଏ, ଏବଂ ଶୁକ୍ର ବସ୍ତ୍ରରେ ନିର୍ଗତ ହୋଇ ତତ୍‌କ୍ଷଣାତ୍ ଚୈତନ୍ୟ ହୁଏ । ନିର୍ଗତ ହେବାର ପୂର୍ବେ ବା ତକ୍ଷଣମଧ୍ୟେ ଚୈତନ୍ୟ ହେଲେ ତହିଁରେ ସ୍ୱତ-

ଛତର ଶୁକ୍ର ନିର୍ଗତ ହେବାର କୌଣସି ବାଧା ଘଟଇ ନାହିଁ । କେବେ ମଧ୍ୟ ନିର୍ଗତ ହୁଏ ନାହିଁ ; ଏ ଅବସ୍ଥାରେ ଅନେକ ପ୍ରକାର ଅସୁଖ ଜନ୍ମେ । ଶିଶ୍ନର ମୂଳ ଟଣ ଟଣ ହୁଏ ଓ ତହିଁରେ ବେଦନା ବୋଧ ହୁଏ, ମୂତ୍ର ତ୍ୟାଗ ସମୟରେ ମୂତ୍ରନାଳୀରେ ଜ୍ୱାଳା ବୋଧ ହୁଏ । ଯେ ପର୍ଯ୍ୟନ୍ତ ଅନ୍ୟ କୌଣସି ଉପାୟରେ ସେହି ନିର୍ଗମୋନ୍ମୁଖ ଶୁକ୍ର ନିର୍ଗତ ନ ହୁଏ ସେ ପର୍ଯ୍ୟନ୍ତ ନାନା ପ୍ରକାର ଅସୁଖ ଅନୁଭୂତ ହେଉଥାଏ ।

କେତେବେଳେ ସ୍ୱପ୍ନରେ ଏରୂପ ବୋଧ ହୁଏ ଯେ, ପଶୁର ବା ପୁରୁଷର ଅଥବା ଅପ୍ରାପ୍ତବୟସ୍କା ବାଳିକା ସହିତ ସଂସର୍ଗ ହେଉଅଛି । ସ୍ତ୍ରୀସଂସର୍ଗରେ ଯେପରିମାଣରେ ଶୁକ୍ର ନିର୍ଗତ ହୁଏ, ସ୍ୱପ୍ନାବସ୍ଥାରେ ତଦପେକ୍ଷା ଅଧିକ ପରିମାଣରେ ଶୁକ୍ର ନିର୍ଗତ ହୁଏ, ଏବଂ ସ୍ତ୍ରୀସଂସର୍ଗର ପରେ ଯେପରିମାଣରେ ଶାରୀରିକ ଦୌର୍ବଲ୍ୟ ଓ ମାନସିକ ନିସ୍ତେଜକତା ହୁଏ, ସ୍ୱପ୍ନଦୋଷର ପରେ ଶରୀର ତଦପେକ୍ଷା ଅଧିକ ଦୁର୍ବଳ ମନ ଅଧିକତର ନିସ୍ତେଜ ହୁଏ ।

ପରୀକ୍ଷା ଓ ଅନୁସନ୍ଧାନଦ୍ୱାରା ଦେଖାଯାଇଅଛି ଯେ ହସ୍ତମୈଥୁନରେ ସ୍ୱପ୍ନଦୋଷ-ଅପେକ୍ଷା ଅଧିକତର ଶୁକ୍ର ନିର୍ଗତ ହୁଏ ଏବଂ ତାହାଦ୍ୱାରା ଶାରୀରିକ ଦୌର୍ବଲ୍ୟ ଓ ମାନସିକ ନିସ୍ତେଜକତା ଅଧିକତର ହୁଏ । ହସ୍ତମୈଥୁନରେ ଶୁକ୍ର ନିର୍ଗତ ହେବା ସମୟରେ ସର୍ବାଙ୍ଗରେ ବିଶେଷତଃ ମେରୁଦଣ୍ଡରେ ଓ ମସ୍ତିଷ୍କରେ ଯେଉଁ ଝିଙ୍କି ଲାଗେ ତହିଁରେ ମେରୁଦଣ୍ଡ ଓ ମସ୍ତିଷ୍କ ବିଶେଷ କ୍ଲିଷ୍ଟ ହୁଏ, ଏବଂ ଏମାନେ ବିଶେଷରୂପେ କ୍ଲିଷ୍ଟ ହେଲେ ଶରୀରର ସକଳଯନ୍ତ୍ର ବିକୃତାବସ୍ଥା ପ୍ରାପ୍ତ ହୁଏ । ସେଯୋଗରୁ ଦେହରେ କ୍ରମେ ନାନାପ୍ରକାର କୁତ୍ସିତ ରୋଗର ଉତ୍ପତ୍ତି ହୁଏ । ଏବଂ ସେହି ସମସ୍ତ ରୋଗର ପ୍ରତୀକାର ନ ହେଲେ ଦେହର ଗୌରବ ଓ ମନୁଷ୍ୟର ମନୁଷ୍ୟତ୍ୱ ଏକବାରେ ନଷ୍ଟ ହୁଏ । ଅଣ୍ଡକୋଷମଧ୍ୟରେ ଜଳ ଜମି ସ୍ଫୀତତା ( Hydrocele ) ଉପସ୍ଥିତ ହୁଏ ଯେ ପ୍ରଥମତଃ ଏକପାର୍ଶ୍ୱରେ ପରେ ଦୁଇପାର୍ଶ୍ୱରେ ସ୍ଫୀତତା ଜନ୍ମେ । ଏ ଅବସ୍ଥାରେ କୋଷ ସମାନ ରହଇ ନାହିଁ । ଗୋଟିଏ ଛୋଟ ଓ ଗୋଟିଏ ବଡ ହୋଇ ପଡେ ।

ଅଣ୍ଡକୋଷର ସ୍ଫୀତତା ଜନ୍ମିଲେ ଶିଶ୍ନର ଦୈର୍ଘ୍ୟ କମିଯାଏ । ଅଣ୍ଡ ଜଳଦ୍ୱାରା ପ୍ରପୀଡିତ ହୋଇ ଆପଣା କ୍ରିୟା "ଶୁକ୍ର ପ୍ରସ୍ତୁତ କରଣ" ଉପଯୁକ୍ତମତେ ସମ୍ପାଦନ କରି ପାରଇ ନାହିଁ; ଏବଂ ତନ୍ନିବନ୍ଧନ କାମର ଚୈତନ୍ୟ ଓ ଶିଶ୍ନର ବଳ କ୍ରମେ କମିଯାଏ ।

କୌଣସି ସମୟରେ କେବଳ ଅଣ୍ଡଗତ ଛୋଟ ହେବାର ଦେଖାଯାଏ । ଏଅବସ୍ଥାରେ ମଧ୍ୟ ଅଣ୍ଡ ଆପଣା କ୍ରିୟା ସମ୍ପାଦନ କରି ପାରଇ ନାହିଁ, ସୁତରାଂ କାମର ଚୈତନ୍ୟ ଓ ଶିଶ୍ନର ଶକ୍ତି କମିଯାଏ । କେବେ ଅଣ୍ଡକୋଷ ଓ ଶିଶ୍ନ ଅନ୍ତ୍ରା ବୋଧ ହୁଏ; ଏବଂ ଟିପ

ଖର୍ବ, ଦୁର୍ବଳ ଏବଂ ଉତ୍ତେଜନା ପ୍ରାୟ ଶିଥିଳ ହୋଇଯାଏ । ଯୁବାପୁରୁଷ ଓ ମଧ୍ୟବୟସ୍କ ବ୍ୟକ୍ତିମାନଙ୍କ ଶିଶ୍ନ ବାଳକର ଶିଶ୍ନ ପ୍ରାୟ ଦେଖାଯାଏ । ଏ ଅବସ୍ଥାରେ ପୁରୁଷ ପ୍ରାୟ ସ୍ତ୍ରୀସଂସର୍ଗରେ ଅକ୍ଷମ ହୋଇପଡ଼େ, ଯୋନିମଧ୍ୟରେ ପ୍ରବେଶ କରିବାର ଶକ୍ତିବର୍ଜିତ ହୋଇ ପଡ଼େ । ମନର ଇଚ୍ଛା ଥାଏ ଏଯୋଗୁଁ ସ୍ତ୍ରୀସଂସର୍ଗନିମିତ୍ତ ବ୍ୟାକୁଳ ହୋଇ ବ୍ୟଗ୍ରଭାବରେ ସ୍ତ୍ରୀକୁ ଆଲିଙ୍ଗନ କରେ କିନ୍ତୁ ମନର ଚାଞ୍ଚଲ୍ୟହେତୁ ବସ୍ତ୍ରରେ ଶୁକ୍ର ନିର୍ଗତ ହୋଇଯାଏ । ସେତେବେଳେ ଲଜ୍ଜା, ବିଷାଦ, କ୍ଷୋଭରେ ଏକବାରେ ମନ ଅସ୍ଥିର ହୁଏ । ଏଅବସ୍ଥାରେ ପୁରୁଷ ଆପଣାକୁ ଘୃଣିତ ବୋଧକରି ପୃଥିବୀପରିତ୍ୟାଗ ନିମିତ୍ତ ଇଚ୍ଛା କରେ । କେବେ୨ ମୂତ୍ରନାଳୀରେ ସୁଡ଼ୁ ସୁଡ଼ୁ ବୋଧ ହୁଏ । ଏହି ସୁଡ଼ୁ ସୁଡ଼ୁ ନିରର୍ଥକ ନୁହେ । କିଛିକାଳ ସୁଡ଼ୁ ସୁଡ଼ୁ ହୋଇ ଶୁକ୍ର ଟୋପା୨ କରି ଚୂଇଁଇ ନିର୍ଗତ ହୁଏ ।

ଶୁକ୍ର ନିର୍ଗତ ହେଲେ ସୁଡ଼ୁ୨ ନିବୃତ୍ତି ହୁଏ । ଧାତୁ ଦୁର୍ବଳ ହେଲେ ତାହା ସଙ୍ଗେ୨ ଜନନେନ୍ଦ୍ରିୟର ସମସ୍ତଯନ୍ତ୍ର ଦୁର୍ବଳ ଓ ବିକୃତାବସ୍ଥା ପ୍ରାପ୍ତ ହୁଏ । ସ୍ୱପ୍ନଦୋଷ ସାଧାରଣତଃ ଏହାର ଗୋଟିଏ ଫଳ । ସ୍ୱପ୍ନଦୋଷର କଥା ପୂର୍ବରେ କିଛି ବର୍ଣ୍ଣିତ ହୋଇଅଛି । ଦୌର୍ବଲ୍ୟଅବସ୍ଥାର ପ୍ରଥମେ ନିଦ୍ରାବସ୍ଥାରେ ସ୍ତ୍ରୀସଂସର୍ଗରେ ସ୍ୱପ୍ନ ଦୃଷ୍ଟ ହୁଏ, ପରେ ଅନ୍ୟ ପ୍ରକାର କୁତ୍ସିତ ସଂସର୍ଗର ସ୍ୱପ୍ନ ଦୃଷ୍ଟ ହୋଇଥାଏ । ଅବଶେଷରେ ବିନା ସ୍ୱପ୍ନରେ ନିଦ୍ରାବସ୍ଥାରେ ଶୁକ୍ର ନିର୍ଗତ ହୁଏ ଏବଂ ଶୁକ୍ର ନିର୍ଗତ ହେବାସମୟରେ ବା ଅବ୍ୟବହିତପୂର୍ବରେ ଯେପ୍ରକାର ନିଦ୍ରା ଭଙ୍ଗ ହୁଅନ୍ତା ଗାଢ଼ ସେପ୍ରକାର ନିଦ୍ରା ଭଙ୍ଗ ହୁଏ ନାହିଁ । ରଜନୀରେ ନିଦ୍ରାବସ୍ଥାରେ ଯେଉଁ ଶୁକ୍ର ନିର୍ଗତ ହୁଏ, ପରଦିବସ ପ୍ରାତଃକାଳରେ ବସ୍ତ୍ରରେ ଦାଗ ଦେଖି ଓ ଶାରୀରିକ ଦୌର୍ବଲ୍ୟ ଓ ମାନସିକଅସ୍ଥିରତା ଅନୁଭବ କରି, ସେବିଷୟ ଜଣାଯାଏ । ଦିବାଭାଗରେ ନିଦ୍ରାବସ୍ଥାରେ ମଧ୍ୟ ଏପ୍ରକାର ଘଟନା ହୁଏ । କ୍ରମେ କୁତ୍ସିତଅଭ୍ୟାସରେ ଧାତୁ ଅଧିକତର ଦୁର୍ବଳ ହେଲେ ଅର୍ଦ୍ଧନିଦ୍ରାବସ୍ଥାରେ ଶୁକ୍ର ନିର୍ଗତ ହୁଏ । ଏଥିରେ ନିଦ୍ରାର ବ୍ୟାଘାତ ଜନ୍ମେ । ଏହା ଅତୀବ ଭୟାନକ ଅବସ୍ଥା । ହସ୍ତମୈଥୁନ ଓ ଅତିଶୟ ଶୁକ୍ରବ୍ୟୟରେ ଯେ ମନୁଷ୍ୟର କେଡ଼େବଡ଼ ଭୟାନକ ଦୁରବସ୍ଥା ହୁଏ ତାହା ଲେଖି ଶେଷ କରିବା ଦୂରେ ଥାଉ ମନରେ ମଧ୍ୟ ଧାରଣା କରିଯାଇ ନ ପାରେ । ଦୌର୍ବଲ୍ୟ ଅତିଶୟ ଗୁରୁତର ହେଲେ ଜାଗ୍ରତାବସ୍ଥାରେ ମାନସିକ ଚାଞ୍ଚଲ୍ୟହେତୁ ଶିଶ୍ନ ଯେବେ ସବଳ ହୋଇ ଉଠେ, ତାହା ହେଲେ ଶଯ୍ୟାର ଦ୍ରବ୍ୟ ଯଥା;—ବସ୍ତ୍ର, ବାଲିସ, କନ୍ଥା ବା ହସ୍ତପଦାଦିର ଘର୍ଷଣରେ ଶୁକ୍ର ନିର୍ଗତ ହୁଏ । ଜନନେନ୍ଦ୍ରିୟ ଏତେ ଶିଥିଳ ହୁଏ ଯେ ସାଧାରଣ ଘର୍ଷଣରେ ମଧ୍ୟ ଶୁକ୍ର ଧାରଣ କରିଯାଏ ନାହିଁ । ପରେ ଶିଶ୍ନର ଅଗ୍ରଭାଗ ସର୍ବଦା ସିକ୍ତ ଓ ପିଚ୍ଛିଳ ଥାଏ, ସ୍ୱଚ୍ଛ ପତଳା ଶୁକ୍ର ନିର୍ଗତ ହେଉଥାଏ । ପ୍ରସ୍ରାବସମୟରେ ଟୋପା୨ ବା ସୂତ୍ରବତ୍ ଶୁକ୍ର ନିର୍ଗତ ହୁଏ ବା ଶିଶ୍ନର ଅଗ୍ରଭାଗ ଦେଇ ଚୂଇଁ-

ପଡ଼ଇ । ପ୍ରସ୍ରାବସହିତ ଓ ଶୌଚରେ ବସି ବେଗ ଦେଲେ ଓ ସାଧାରଣତଃ ସମୟେ୨ ବା ସର୍ବଦା ପଡ଼ଇ। ଶୁକ୍ର ନିର୍ଗତ ହେଲେ ତାହାକୁ ଶୁକ୍ରମେହରୋଗ ବୋଲନ୍ତି । ଏହା ଧାତୁଦୌର୍ବଲ୍ୟର ଫଳ । କେହି୨ ଏହାକୁ ସ୍ୱତନ୍ତ୍ର ବ୍ୟାଧି ବୋଲି ସ୍ୱୀକାର କରନ୍ତି ନାହିଁ । ଧାତୁଦୌର୍ବଲ୍ୟ ବ୍ୟାଧି ଏବଂ ଶୁକ୍ରମେହ ତାହାର ଏକ ପ୍ରଧାନଲକ୍ଷଣ ବା ଫଳ ମାତ୍ର, କେହି ବୋଲନ୍ତି ଯେ ଶୁକ୍ରମେହ ସ୍ୱତନ୍ତ୍ର ବ୍ୟାଧି । ହସ୍ତମୈଥୁନ, ଅତିଶୟ ଶୁକ୍ର-କ୍ଷୟ, ଧାତୁର ପୀଡ଼ା ବା ଗର୍ମିପୀଡ଼ା ଜନ୍ୟ ଧାତୁ ଦୌର୍ବଲ୍ୟ ତାହାର ଏକ ପ୍ରଧାନ କାରଣ ।

ଅସ୍ମମତରେ ସ୍ୱପ୍ନ ଦୋଷ ଯେପ୍ରକାର ସ୍ୱତନ୍ତ୍ର ପୀଡ଼ା ନୁହେ, ଧାତୁ ଦୌର୍ବଲ୍ୟ ଓ ଉପସ୍ଥ ଶିଥିଳତାର ଏକ ପ୍ରଧାନ ଲକ୍ଷଣ, ସେହିପ୍ରକାର ଶୁକ୍ର ମେହ ଧାତୁଦୌର୍ବଲ୍ୟର ଏକ ପ୍ରଧାନ ଲକ୍ଷଣ ଓ ଫଳ ମାତ୍ର । ଯାହା ହେଉ ଏ ବିଷୟ ଘେନି ବାଦାନୁବାଦ କରି କାଳକ୍ଷେପଣ କରିବା ଅସ୍ମର ଉଦ୍ଦେଶ୍ୟ ନୁହେ । ଅସ୍ମେ ଶୁକ୍ରମେହକୁ ଧାତୁ-ଦୌର୍ବଲ୍ୟର ଏକ ପ୍ରଧାନ ଲକ୍ଷଣ ଓ ଫଳ ବୋଲି ନିର୍ଦ୍ଦେଶ କଲୁଁ । ଧାତୁଦୌର୍ବଲ୍ୟ ଗମ୍ଭୀର ହେଲେ ସର୍ବଦା ଅଳ୍ପେ୨ ଶୁକ୍ର ନିର୍ଗତ ହୁଏ ଓ ତାହା ଅଧିକ ଜଣାପଡ଼ଇ ନାହିଁ ଓ ଜନନେନ୍ଦ୍ରିୟ ଏରୂପ ଶିଥିଳ ହୁଏ ଯେ ଶୁକ୍ର ନିଃସରଣର ଟେର ପାଇବା କଠିନ । କେବେ୨ ଏକବାରେ ଅଧିକ ପରିମାଣରେ ଶୁକ୍ର ନିର୍ଗତ ହୋଇ ମଧ୍ୟ ରୋଗୀ ଟେର ପାଏ ନାହିଁ । କ୍ରମେ ସନ୍ତାନୋତ୍ପାଦିକା ଶକ୍ତିର ହ୍ରାସ ହୁଏ । ଦୃଷ୍ଟିମ ଧ୍ୟାନ ନ କଲେ ସନ୍ତାନୋତ୍ପାଦିକା ଶକ୍ତି ଏକବାରେ ବିନଷ୍ଟ ହୁଏ ।

ସମୟେ୨ ଅଣ୍ଡକୋଷ ଝୁଲି ପଡେ ଏବଂ ଗିଲଟିଘରରୁ ଅତିଶୟ ଦୁର୍ଗନ୍ଧ ଅନୁଭୂତ ହୁଏ । ଏବଂ ଗିଲଟିଘରରେ ଓ ତନ୍ନିକଟସ୍ଥ ସ୍ଥାନରେ ଦଦ୍ରୁରୋଗ ଉପସ୍ଥିତ ହୁଏ । ଶିଶ୍ନର ଅଗ୍ରଭାଗ ଅଧିକ ପରିମାଣରେ ଦୁର୍ଗନ୍ଧ ହୁଏ । ସମୟେ୨ ଅଣ୍ଡକୋଷର ଚର୍ମଉପରେ ନାନାପ୍ରକାର ଚର୍ମରୋଗ ଉତ୍ପତ୍ତି ହୁଏ ।

ସର୍ବାଙ୍ଗର ଚର୍ମ ଶୁଷ୍କ ଓ ଲାବଣ୍ୟବର୍ଜ୍ଜିତ ହୁଏ ଓ ଅପେକ୍ଷାକୃତ ପିଙ୍ଗଳବର୍ଣ୍ଣ ହୁଏ ; ଓଷ୍ଠରେ ଦାନ୍ତରେ ରସ ଥାଏ । ରୋଗୀ ସମୟେ୨ ଶିରଃପୀଡ଼ାରେ କାତର ହୁଏ, ଏବଂ ଶରୀର ଅତିଶୟ ରୁକ୍ଷ ବୋଧକରେ, କଣ୍ଠସ୍ୱର କେବେ୨ ଭାର ଓ ନିସ୍ତେଜ ହୁଏ । ଶରୀର କେବେ୨ ଏମନ୍ତ ମୋଟା ହୁଏ ଦେଖିଲେ ବୋଧ ହୁଏ ଯେ କୌଣସି ପୀଡ଼ା ନାହିଁ, କିନ୍ତୁ ରୋଗୀ ବୋଲେ ଯେ ତାହାର ଶରୀରରେ କଣମାତ୍ର ବଳ ନାହିଁ । ଆହାର କମି ଯାଏ । ମାଂସାଦି କଣମାତ୍ର ସହ୍ୟ ହୁଏ ନାହିଁ । ଖାଇଲେ ଗରମ ହୁଏ, ସର୍ବାଙ୍ଗରେ କେବେ୨ ଜ୍ୱାଳା ହୁଏ । ଏମନ୍ତ କି ଶୀତକାଳରେ ମଧ୍ୟ ଘୋଡ଼ାଇ ହେବାର ଆବଶ୍ୟକ ହୁଏ ନାହିଁ ।

ଶିଶ୍ନ ଶକ୍ତ ହୁଏ, କିନ୍ତୁ ଅଧିକକ୍ଷଣ ରହଇ ନାହିଁ । ଏବଂ ସହଜରେ ଶୁକ୍ର ମଧ୍ୟ ନିର୍ଗତ ହୁଏ ନାହିଁ । ଅନେକ ଚେଷ୍ଟାରେ ଅତ୍ୟଳ୍ପ ପରିମାଣ ଜଳବତ୍ ଶୁକ୍ର ନିର୍ଗତ ହୁଏ । ଏଥିରୁ ମଧ୍ୟ ଧାତୁଦୌର୍ବଲ୍ୟ ଉପସ୍ଥିତ ହୋଇପାରେ ।

ଅନେକ ଦିନପର୍ଯ୍ୟନ୍ତ କୋଷ୍ଠବଦ୍ଧ ରହିଲେ ମଧ୍ୟ ଅନାହୂତ ଶୁକ୍ର ନିଃସରଣ ଉପସ୍ଥିତ ହୁଏ । ଏହା ନିବାରଣନିମନ୍ତେ ସମୟେ ୨ ଅଜ୍ଞ ଚିକିତ୍ସକମାନେ କଠିନ ଓ ତୀବ୍ର ଔଷଧ ପ୍ରୟୋଗ କରନ୍ତି । ସେହିସମସ୍ତ ଔଷଧ କେବେ ୨ ପେଟର ପୀଡ଼ା ଭଲ ନ କରି ବରଂ ରୋଗ ବଦ୍ଧମୂଳ କରନ୍ତି । କାଣ୍ଥାରାଇଡସ, ଦୋବ, ସିଡ୍ଲିଟିଜ, ପାଉଡର ଦୁର୍ବଳଜନନେନ୍ଦ୍ରିୟକୁ ଉତ୍ତେଜିତ କରି ଅଧିକ ଦୁର୍ବଳ କରେ ।

ତୀବ୍ରବିରେଚକ, ଯଥା—ଏଲୋଏସ, କଲୋସିନ୍ଥ, ଏସ୍କାମନି ଇତ୍ୟାଦି ନାଡ଼ୀର ନିମ୍ନଭାଗକୁ ଉତ୍ତେଜିତ କରେ ଏବଂ ତାହାର ନିକଟବର୍ତ୍ତୀ ଜନନେନ୍ଦ୍ରିୟ ମଧ୍ୟ ସେହିସଙ୍ଗେ ଉତ୍ତେଜିତ ହେଲେ ଅନାହୂତ ଶୁକ୍ର ନିଃସରଣ ରୋଗ ବୃଦ୍ଧି ପାଏ ।

ନାଡ଼ୀର ନିମ୍ନଦେଶବାସୀ ସୂକ୍ଷ୍ମ ଓ ଶ୍ୱେତବର୍ଣ୍ଣ କ୍ଷୁଦ୍ରକୃମି କେବେ ୨ ଜନନେନ୍ଦ୍ରିୟକୁ ଏପ୍ରକାର ଉତ୍ତେଜିତ କରେ ଯେ ଅନାହୂତ ଶୁକ୍ର ନିଃସରଣ ରୋଗର ଉତ୍ପତ୍ତି ହୁଏ ।

ତଦ୍ଭିନ୍ନ ଅର୍ଶରୋଗ, ମୂତ୍ରକୃଚ୍ଛ୍ରରୋଗ, ଧାତୁର ପୀଡ଼ା, ମେହ, ମଧୁମେହ, ଗରମି, ଅତଏବ ପାରଦସଂଯୁକ୍ତ ଔଷଧ ସେବନ, ( ମୂତୋ ) ମୂତ୍ରସ୍ଥଳୀର ନିମ୍ନ ପଶ୍ଚାଦ୍ଭାଗର ଉତ୍ପତ୍ତି ବା ଅସକ୍ତି, ଅପରିମିତ ଆହାର ଯହିଂରେ ସର୍ବଦା ଅଜୀର୍ଣ୍ଣରୋଗ ହୁଏ, ଅପରିମିତ ଧୂମ୍ରପାନ, ଅପରିମିତ ଲଙ୍କାମରିଚ ସେବନ, ଅପରିମିତ ଚାହା, କର୍ପୂର, ଗରମ ମସଲା, ମଦ୍ୟ, ଅଫିମ ଇତ୍ୟାଦି ସେବନରେ ସମୟେ ୨ ଧାତୁଦୌର୍ବଲ୍ୟ ରୋଗ ଉପସ୍ଥିତ ହୁଏ । ଏଦେଶରେ ସନ୍ନ୍ୟାସୀଗଣ ଭାଙ୍ଗ ବା ଲଙ୍କାମରିଚ ସେବନ କରି ପୁରୁଷତ୍ୱ ନଷ୍ଟ କରିବାର ଚେଷ୍ଟା କରନ୍ତି । ସେମାନେ କୋହନ୍ତି ଯେ ଇନ୍ଦ୍ରିୟଚାଞ୍ଚଲ୍ୟ ବିଶେଷତଃ ଜନନେନ୍ଦ୍ରିୟର ଚାଞ୍ଚଲ୍ୟ ଥିଲେ, ଯୋଗ, ଯାଗ, ତପସ୍ୟା, ବ୍ରତ, ନିୟମ, ଇତ୍ୟାଦିରେ ମନୋଯୋଗ ହୁଏ ନାହିଁ ।

ଏଦେଶୀୟ ଇନ୍ଦ୍ରିୟପରାୟଣ ପୁରୁଷଗଣ କେବେ ୨ ଦ୍ୱିଗୁଣ ସମ୍ଭୋଗର ଅନ୍ୱେଷଣରେ କାମେନ୍ଦ୍ରିୟର ଚାଞ୍ଚଲ୍ୟ ସମ୍ପାଦନନିମିତ୍ତ ଅଫିମସେବନ ଆରମ୍ଭ କରନ୍ତି । ସେମାନଙ୍କର ସାଧାରଣ ସଂସ୍କାର ଏହି ଯେ ଅଫିମସେବନ କଲେ ଧାରଣାଶକ୍ତି ବୃଦ୍ଧି ହୁଏ । ବାସ୍ତବିକ ଅଫିମ ସେବନ ଆରମ୍ଭ କଲେ ପ୍ରଥମତଃ କିଛି ଧାରଣାଶକ୍ତି ବୃଦ୍ଧି ହୁଏ; କିନ୍ତୁ କ୍ରମେ ୨ ପୁରୁଷତ୍ୱ ଏକବାରେ ପୂର୍ଣ୍ଣ ଦୌର୍ବଲ୍ୟରେ ଉପସ୍ଥିତ ହୁଏ ।

ଅଧିକକାଳ ଗରମସ୍ଥାନରେ ବାସ ବା ଗରମଶଯ୍ୟାରେ ଶୟନ କଲେ, କେବେ ୨ ସ୍ୱପ୍ନଦୋଷ ଓ ଅନାହୂତ ଶୁକ୍ରନିଃସରଣ ଉପସ୍ଥିତ ହୁଏ ।

ପ୍ରଥମରେ ଅବିବେଚକ ବ୍ୟକ୍ତିମାନଙ୍କ ନିକଟରେ ସ୍ପଷ୍ଟ ବୋଧ ହେବ ଯେ ସ୍ୱଭାବ-ପ୍ରଣାଳୀ ସ୍ତ୍ରୀସଂସର୍ଗରେ ସମାନ ଫଳ । କିନ୍ତୁ କିଛିକାଳ ବିବେଚନା କରି ଦେଖିଲେ ଚିନ୍ତାଶୀଳ ବ୍ୟକ୍ତିମାନେ ଅନାୟାସରେ ବୁଝିପାରିବେ ଯେ କାମରିପୁ ଚରିତାର୍ଥ କରି-ବାର ପୂର୍ବେ ମନର ଅଧିକତର ଚାଞ୍ଚଲ୍ୟ ଜାତହେଲେ ଅଧିକ ପରିମାଣରେ ଶୁକ୍ର ନିର୍ଗତ ହୁଏ । ଯେତେବେଳେ କୌଣସି ସ୍ତ୍ରୀପ୍ରତି ଅଧିକ ଆସକ୍ତି ଜନ୍ମେ ସେତେବେଳେ ତାହାକୁ ସ୍ପର୍ଶକଲେ ବା ଦେଖିଲେ ବସ୍ତ୍ରରେ ଶୁକ୍ର ନିର୍ଗତହୋଇ ଯାଏ । ଅନାୟାସ-ଲବ୍ଧଦ୍ରବ୍ୟ ବିଷୟରେ କେହି ଅଧିକ ଚିନ୍ତା କରନ୍ତି ନାହିଁ । କାରଣ ତାହା ମନେକଲେ ପ୍ରାପ୍ତହୋଇ ଯାଏ । ଯାହା ପାଇବାକୁ କଷ୍ଟ ବା ନିକଟରେ ପ୍ରାପ୍ତହୁଏ ନାହିଁ ତାହା-ବିଷୟରେ ସ୍ୱଭାବତଃ ଅଧିକ ଚିନ୍ତା ଉପସ୍ଥିତ ହୁଏ । ଯେଉଁ ସମୟଠାରୁ ତାହାର ବିଷୟ ଚିନ୍ତା କରିବାର ଆରମ୍ଭ ହୁଏ, ସେହି ସମୟଠାରୁ ମନ ଉତ୍ତେଜିତ ହେଉଥାଏ । ମନ କାମବିଷୟରେ ଅଧିକ ଉତ୍ତେଜିତ ହେଲେ ସଂସର୍ଗସମୟରେ ଅଳ୍ପକାଳମଧ୍ୟରେ ଅଧିକ ପରିମାଣରେ ଶୁକ୍ର ନିର୍ଗତ ହୁଏ ।

ଶୁକ୍ରାଶୟରେ ଶୁକ୍ର ସର୍ବଦା ପ୍ରସ୍ତୁତ ନ ଥାଏ । ଯେବେ ମନରେ କାମବିଷୟର ଚିନ୍ତା ଉପସ୍ଥିତ ହୁଏ ବା ସ୍ତ୍ରୀର ଆଲିଙ୍ଗନ ବା ଆଲିଙ୍ଗନର ଉଦ୍‌ଯୋଗକର ହୁଏ, ସେହି ସମୟଠାରୁ ଶୁକ୍ରାଶୟରେ ଶୁକ୍ର ପ୍ରସ୍ତୁତ ହେବାର ଆରମ୍ଭହୁଏ, ଏବଂ ମନର ଚାଞ୍ଚଲ୍ୟ ଯେତେ ଅଧିକ ହୁଏ ସେତେଶୀଘ୍ର ଶୁକ୍ର ପ୍ରସ୍ତୁତ ହୋଇ ନିର୍ଗତ ହୁଏ । ପରସ୍ତ୍ରୀଠାର୍ଗର ବା ବେଶ୍ୟାଗମନରେ ମନର ଯେତେଦୂର ଚାଞ୍ଚଲ୍ୟ ଉପସ୍ଥିତ ହୁଏ, ଅନାୟାସଲବ୍ଧ ସ୍ୱସ୍ତ୍ରୀଗମନୋଦ୍ଯୋଗ ସମୟରେ ସେତେ ହୁଏ ନାହିଁ । ଏଯୋଗରୁ ଯହିଁରେ ମନର ଚାଞ୍ଚଲ୍ୟ ଅଧିକ ହୁଏ, ତହିଁରେ ଅଧିକ ପରିମାଣରେ ଶୁକ୍ର ନିର୍ଗତ ହୁଏ । ଅଧିକତର ଶୁକ୍ର ନିର୍ଗତ ହେଲେ ଶରୀର ଓ ମନ ଅଧିକତର ଦୁର୍ବଳ ଓ ନିସ୍ତେଜ ହୁଏ; ଉପର୍ଯ୍ୟପରି କେତେକ ଦିନ ଏହିପ୍ରକାର ହେଲେ ଧାତୁଦୌର୍ବଲ୍ୟର ସୂତ୍ରପାତ ହୁଏ ଏବଂ ସୁଦୀର୍ଘକାଳରେ ଧାତୁଦୌର୍ବଲ୍ୟରୋଗ ସମ୍ପୂର୍ଣ୍ଣରୂପେ ପ୍ରକାଶ ପାଏ, ଅନ୍ୟାନ୍ୟ ଉତ୍କଟରୋଗର ଆବିର୍ଭାବ ହୁଏ ଏବଂ ସନ୍ତାନୋତ୍ପାଦିକା ଶକ୍ତିର ହ୍ରାସ ହୁଏ । ପୂର୍ବେ କୋଲଯାଇଅଛି ଯେ ସ୍ତ୍ରୀସଂସର୍ଗ ଅପେକ୍ଷା ସ୍ୱପ୍ନଦୋଷରେ ଅଧିକ ପରିମାଣରେ ଶୁକ୍ର ନିର୍ଗତ ହୁଏ । ତାହାର କାରଣ ଏହିଯେ ସ୍ୱପ୍ନଦୋଷ ସାଧାରଣତଃ କେବଳ ମାତ୍ର ମନର ଚାଞ୍ଚଲ୍ୟ ଏବଂ ଜନନେନ୍ଦ୍ରିୟ ଦୌର୍ବଲ୍ୟ ହେତୁ ହୁଏ । ପୂର୍ବେ କୋଲ-ଯାଇଅଛି ଯେ ମନର ଚାଞ୍ଚଲ୍ୟ ଯେତେ ଅଧିକ ହେବ ଶୁକ୍ର ମଧ୍ୟ ସେତେ ଅଧିକ ପରି-ମାଣରେ ନିର୍ଗତ ହେବ । ସ୍ୱପ୍ନଦୋଷକାଳରେ ସମ୍ୟକ୍ ମନର ଚାଞ୍ଚଲ୍ୟ ହୁଏ ଏଥିପାଇଁ ସେ ସମୟରେ ଅଧିକ ପରିମାଣରେ ଶୁକ୍ର ବିନିର୍ଗତ ହୁଏ ହସ୍ତମୈଥୁନକାରୀ

ସର୍ବାପେକ୍ଷା ଅଧିକ ପରିମାଣରେ ଶୁକ୍ର ନିର୍ଗତହୁଏ, ତାହାର କାରଣ ଏହି ଯେ ଏଥିରେ ମଧ୍ୟ ସମ୍ଭବ୍ ମନର ଚାଞ୍ଚଲ୍ୟ ଉପସ୍ଥିତ ହୁଏ; ଏବଂ ସ୍ତ୍ରୀସଂସର୍ଗ ଅପେକ୍ଷା ହସ୍ତ ଅଧିକତର ଦ୍ରୁତ ସଂଚାଳିତ ହୁଏ । ତହିଁରେ ଜନନେନ୍ଦ୍ରିୟର କ୍ଷୁଦ୍ର ଅଙ୍ଗ-ସମୂହମଧ୍ୟରେ ଅଧିକ ପରିମାଣରେ ସଞ୍ଚାଳିତ ହୁଏ । ଏହି ନିମିତ୍ ସର୍ବାପେକ୍ଷା ଅଧିକ ପରିମାଣରେ ଶୁକ୍ର ଏଥିରେ ନିର୍ଗତ ହୁଏ । ଏଥିରେ ଯେପ୍ରକାର ଜୋରରେ ଓ ଦ୍ରୁତବେଗରେ ଶୁକ୍ର ପ୍ରସୂତ ହୁଏ, ତହିଁରେ ଜନନେନ୍ଦ୍ରିୟର ପ୍ରତ୍ୟେକ ଯନ୍ତ୍ର ଅତିଶୟ ସନ୍ତପ୍ତ ହୁଏ । ମେରୁଦଣ୍ଡ ଓ ମସ୍ତିଷ୍କଗଣି ଅତିଶୟ ଆଘାତ ପ୍ରାପ୍ତହୁଏ ଓ ତମକ ଯାଏ । ଏହେତୁ ପରିଣାମରେ ସେ ଯନ୍ତ୍ରଙ୍କର ଦୌର୍ବଲ୍ୟ ଉପସ୍ଥିତ ହୁଏ । ଅଧିକ ଦିନ-ପର୍ଯ୍ୟନ୍ତ ଏହି ପ୍ରକାର ଆଘାତ ପାଇଲେ ଏକାନ୍ତ ଦୌର୍ବଲ୍ୟ ଉପସ୍ଥିତ ହୁଏ, ଏବଂ ତଜ୍ଜନିତ ନାନାପ୍ରକାର ଶାରୀରିକ ରୋଗ ଓ ମାନସିକ ଦୌର୍ବଲ୍ୟ ଉପସ୍ଥିତ ହୋଇ ମନୁଷ୍ୟର ମନୁଷ୍ୟତ୍ୱ ନଷ୍ଟ କରେ । ଉପେତ୍ତନିମିତ୍ କେବେ୨ ରୋଗବଶତଃ କଠିନ ହୁଏ ଓ ଶୁକ୍ରପ୍ରଣାଳୀର ମୂଳଭାଗରେ ମଧ୍ୟ ଦୌର୍ବଲ୍ୟ ଉପସ୍ଥିତ ହୁଏ । ଯେଉଁ ସକଳ ବ୍ୟକ୍ତି ଅତିଶୟ କଠିନ ଶାସ୍ତ୍ରୀୟ ଚର୍ଚ୍ଚାରେ ଅଧିକକ୍ଷଣ ନିମଗ୍ନ, ସେମାନଙ୍କର କେବେ୨ ଧାତୁଦୌର୍ବଲ୍ୟ ଜନ୍ମେ । ବୃଦ୍ଧାବସ୍ଥାରେ ମଧ୍ୟ ଧାତୁ-ଦୌର୍ବଲ୍ୟ ଜନ୍ମେ, କିନ୍ତୁ ପ୍ରାୟ ପ୍ରଥମ ବୟସର ଅତ୍ୟାଚାରରେ ବୃଦ୍ଧାବସ୍ଥାରେ ଧାତୁ-ଦୌର୍ବଲ୍ୟ ପ୍ରକାଶ ପାଏ । ପ୍ରଥମ ବୟସର ଅତ୍ୟାଚାରହିଁ ଉତ୍ତର ବୃଦ୍ଧାବସ୍ଥାରେ ଧାତୁ-ଦୌର୍ବଲ୍ୟର ପ୍ରଧାନ କାରଣ । କେବଳ ବୃଦ୍ଧାବସ୍ଥାହିଁ ପୁରୁଷତ୍ୱ ନାଶର ପ୍ରଧାନ କାରଣ ନୁହେ । ଦେଖାଯାଉଅଛି ଯେ ଅନେକବ୍ୟକ୍ତି ବୃଦ୍ଧାବସ୍ଥାରେ ବିବାହ ହୋଇ ଅନେକ ସନ୍ତାନ ଉତ୍ପାଦନ କରି ଅଛନ୍ତି । ହସ୍ତମୈଥୁନ ହେତୁ ଧାତୁ ଦୌର୍ବଲ୍ୟ ଏବଂ ଶାରୀରିକ ଓ ମାନସିକ ଉତ୍ତେଜକତା ଯେତେଦୂର ସନ୍ତାନ ଅଜନ୍ମୋତ୍ପାଦକ ଅନ୍ୟକାରଣ ହେତୁ ସେ ଧାତୁ ଦୌର୍ବଲ୍ୟ ଜନ୍ମେ, ତାହା ସେତେ ନୁହେ । ଧାତୁଦୌର୍ବଲ୍ୟ ହେଲେ ଯେଉଁ ସକଳ ଗୁରୁତର ରୋଗର ଉତ୍ପତ୍ତି ହୁଏ ତାହାର ଅଧିକାଂଶହିଁ ହସ୍ତମୈଥୁନ ହେତୁ ଧାତୁଦୌର୍ବଲ୍ୟର ଫଳ ।

ସମାପ୍ତ ।